"ଝଞ୍ଜା"ର ନାଟ୍ୟରୂପ ପ୍ରକାଶ ପାଉଛି । ଏଇ ଅବସରରେ ଏ ଦୁ' ଧାଡ଼ି ଲେଖିବାର ସୁଯୋଗ ମୁଁ ନେଉଛି । ......ବହୁଦିନ ତଳର କଥା—ସଦ୍ୟ ସ୍କୁଲ ଜୀବନରୁ ବିଦାୟ ନେଇଥାଏ । କାହ୍ନୁ ବାବୁଙ୍କ 'ଶାସ୍ତି' ଉପନ୍ୟାସଟି ପଢ଼ିଲି । ପଢ଼ା ଶେଷ କରିବାର ପର ମୁହୂର୍ତ୍ତରୁହିଁ ଆରମ୍ଭ କଲି ନାଟକ ଲେଖା । 'ଶାସ୍ତି'ର ନାଟ୍ୟରୂପ କ'ଣ ଲେଖିଥିଲି, କେତେଦୂର ଅଗ୍ରସର ହୋଇଥିଲି, ଆଜି ଠିକ୍ ମନେ ପଡ଼ୁନାହିଁ । ତେବେ, ଗୋଟିଏ ଗୋଟିଏ ପରିଚ୍ଛେଦକୁ ସଂଳାପ ସଂଯୋଜନାରେ ଗୋଟିଏ ଗୋଟିଏ ଦୃଶ୍ୟରେ ପରିଣତ କରିବା ବ୍ୟତୀତ ଆଉ ବୋଧହୁଏ କିଛି କରିପାରି ନ ଥିଲି । କରିବା ଭଳି ବିଦ୍ୟା ବୁଦ୍ଧିର ମଧ୍ୟ ପ୍ରଚୁର ଅଭାବ ସେତେବେଳେ ଥିଲା ।

ଆଜି ଯାହାକୁ ଯୋଗାଯୋଗ ନ କହି ମୁଁ ଆଉ କହିବି କ'ଣ ? ଯୋଗାଯୋଗ ନ ହୋଇଥିଲେ, ସେଦିନ ବନ୍ଧୁ ଲକ୍ଷ୍ମୀନାରାୟଣ ମହାନ୍ତି [ ତାଙ୍କୁ ଶତ ଧନ୍ୟବାଦ ] ଡଗରପଡ଼ା ରାସ୍ତା ଉପରେ ସେଇ କାହ୍ନୁବାବୁଙ୍କ 'ଝଞ୍ଜା' ଉପନ୍ୟାସର ନାଟ୍ୟରୂପ ପାଇଁ ମତେ ଅନୁରୋଧ କରିଥାନ୍ତେ କାହିଁକି ? ନାଟକ ଲେଖାରେ ହାତ ଦେଇ ପ୍ରାୟ ଦଶଖଣ୍ଡି ମୌଳିକ ନାଟକ ଲେଖିଛି । ବଙ୍ଗଳା ଉପନ୍ୟାସ 'ରାମେର ସୁମତି'କୁ ଓଡ଼ିଆ ନାଟ୍ୟରୂପ ଦେଇଛି । 'ମଲାଜହ୍ନ' ଉପନ୍ୟାସକୁ ଭିତ୍ତି କରି ବେତାର ନାଟକ ଲେଖିଛି । ଅନ୍ୟ ଓଡ଼ିଆ ଉପନ୍ୟାସକୁ ମଞ୍ଚୋପଯୋଗୀ ନାଟକରେ ପରିଣତ କରିବାର ଯେଉଁ ପ୍ରେରଣା ଦିନେ 'ଶାସ୍ତି' ମତେ ଯୋଗାଇ ଥିଲା, ତା'ର ସର୍ବପ୍ରଥମ ଉପଯୋଗ 'ଝଞ୍ଜା'ରେ ମୁଁ କରି ପାରିଛି । ......ଏଥିପାଇଁ ଏ ଦୁଇ ଉପନ୍ୟାସର ସ୍ରଷ୍ଟା 'କାହ୍ନୁଚରଣ'ଙ୍କ ନିକଟରେ ମୁଁ ଋଣୀ—ଭାଷାରେ ପ୍ରକାଶ କରି ନ ପାରିଲା ଭଳି ପରିମାଣରେ ଋଣୀ !

'ହିନ୍ଗୁଳା' ନାଟକର ଜନତା ରଙ୍ଗମଞ୍ଚରେ ମଞ୍ଚସ୍ଥ ହେଲା। କାହ୍ନୁବାବୁ ସୁଦୂର ନୋର'ପୃଷ୍ଠରେ। ଆସି ଦେଖିବାର ଅବକାଶ ନାହିଁ। ମୋର ମନେ ହେଉଥାଏ—ଏ ଯେପରି ଡେନ୍‌ମାର୍କର ରାଜକୁମାରଙ୍କ ଅନୁପସ୍ଥିତିରେ ହାମଲେଟ୍ ନାଟକର ଅଭିନୟ ହୋଇଯାଉଛି। ......ମନରେ ଭୟ ବି କମ୍ ନୁହେଁ। କାରଣ ପାଣ୍ଡୁଲିପି ନ ପଢ଼ି କାହ୍ନୁବାବୁ ମତେ ଅଭିନୟର ଅନୁମତି ଦେଇଥିଲେ। ......ଏତିକବେଳେ ତାଙ୍କଠୁଁ ଚିଠି ପାଇଲି— "ନିଜ ଆଖିରେ ନ ଦେଖିଲେ ବି 'ହିନ୍ଗୁଳା' ନାଟକର ଅଭିନୟ ମୋର ବହୁ ବଶିଷ୍ଟ ବନ୍ଧୁ, ବିଶେଷତଃ ଶ୍ରୀଯୁକ୍ତ କାଳନ୍ଦୀଚରଣ ପାଣିଗ୍ରାହୀ ଓ ଡକ୍ଟର ମାୟାଧର ମାନସିଂହ 'ଦେଖା' ଭିତର ଦେଇ ମୁଁ ଦେଖି ପାରିଚି। ......ନାଟ୍ୟରୂପ ଦେବାରେ ତମେ ଯେଉଁ ସଫଳତା ହାସଲ କରିଚ ତା' ଆଉ କେହି ପାରିଥା'ନ୍ତା କି' ନା ସନ୍ଦେହ"। ......ଏ ପ୍ରଶସ୍ତିର ବିନିମୟରେ ଓଡ଼ିଶାର ଏଇ ବରେଣ୍ୟ ଔପନ୍ୟାସିକଙ୍କ ଉଦ୍ଦେଶ୍ୟରେ ମୁଁ ଗୌରବ କୃତଜ୍ଞତା ଜଣାଉଚି ମାତ୍ର।

'ଜନତା' ରଙ୍ଗମଞ୍ଚ ଏକ ବ୍ୟବସାୟୀଙ୍କ ଅନୁଷ୍ଠାନ। ଏଭଳି ଅନୁଷ୍ଠାନରେ ଅଭିନୀତ ନାଟକ ସମ୍ବନ୍ଧରେ ବହୁ ଲୋକଙ୍କର ବହୁ ବିଚିତ୍ର ଧାରଣା ରହିଚି। ଆର୍ଥିକ ଦୃଷ୍ଟିରୁ 'ହିନ୍ଗୁଳା'ର ଅଭିନୟକୁ ଏକ 'ରିସ୍କ' ବୋଲି କୁହା ଯା ଥିଲା। କିନ୍ତୁ 'ଜନତା'ର କର୍ତ୍ତୃପକ୍ଷଙ୍କୁ ସାଧୁବାଦ, ସେମାନେ ଦ୍ୱିଗୁଣ ଉତ୍ସାହରେ ଏ 'ରିସ୍କ' ବହନ କରି ଆଶାତୀତ ଭାବେ ସଫଳକାମ ହୋଇଚନ୍ତି।

କାଳୀଗଳି
କଟକ
୨୮-୧-୧୯୫୮

ଗୋପାଳ ଛୋଟରାୟ

# କିଏ କଣ କହନ୍ତି—

ଇଂରାଜିରେ ଯାହାକୁ କହନ୍ତି "ରିସ୍କ" ବା ବିପଦ ତାକୁ ମୁଣ୍ଡରେ ମୁଣ୍ଡାଇ ତଥା କ୍ଷତଗ୍ରସ୍ତ ହେବୁ କିନ୍ତୁ ଲୋକଙ୍କ ରୁଚିକୁ ବଦଳାଇବୁ ଏଭଳି ଏକ ଦୁଃସାହସିକ ଉଦ୍ୟମ ଓ ଆତ୍ମଜିଜ୍ଞାସା ନେଇ ଜନତା ରଙ୍ଗମଞ୍ଚର କାହ୍ନୁ ଚରଣଙ୍କ ସୁପରିଚିତ ଉପନ୍ୟାସ ଝଂକାକୁ ମଞ୍ଚସ୍ଥ କରୁଛି। ଏହାକୁ ନାଟ୍ୟ-ରୂପ ଦେଇଛନ୍ତି, ନାଟ୍ୟକାର ଶ୍ରୀ ଗୋପାଳ ଛୋଟରାୟ × × × ଠିକ୍ ନାଟକକୁ ଜଟେଇ ରଖିବା ଭଳି ଅଳଙ୍କାର ମଣ୍ଡିତ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାଷା ବା ସଂଳାପ ପ୍ରୟୋଗ ଦିଗରୁ "ଝଂକା" ବର୍ତ୍ତମାନ ଯୁଗରେ ଏକ ସାର୍ଥକ ଉଲ୍ଲେଖଯୋଗ୍ୟ ନାଟକ। × × × × ଗୋପାଳ ଛୋଟରାୟଙ୍କୁ ଏଥିଲାଗି ଆନ୍ତରିକ ଧନ୍ୟବାଦ। ସେ ଉପନ୍ୟାସଟିରେ ଠିକ୍ ସ୍ଥାନରୁ ସୂତ୍ର ଧରିପାରିଛନ୍ତି।

'ସମାଜ' ତା ୨୯।୧୦।୫୭ ରିଖ

ପ୍ରାୟ ମାସେ ହେବ ଜନତା ରଙ୍ଗମଞ୍ଚରେ ବହୁ ଆକାଂକ୍ଷିତ "ଝଂକା" ନାଟକ ପ୍ରଦର୍ଶିତ ହେଉଛି। ଓଡ଼ିଶାର ଲବ୍ଧପ୍ରତିଷ୍ଠ ଔପନ୍ୟାସିକ କାହ୍ନୁ ଚରଣ ମହାନ୍ତିଙ୍କର "ଝଂକା" ଉପନ୍ୟାସକୁ ନାଟ୍ୟରୂପ ଦେଇଛନ୍ତି ଓଡ଼ିଶାର ପ୍ରଖ୍ୟାତ ନାଟ୍ୟକାର ଶ୍ରୀ ଗୋପାଳ ଛୋଟରାୟ। ନାଟ୍ୟକାରଙ୍କର ନାଟ୍ୟରୂପ ଦେବାର ବାହାଦୁରୀ ଅଛି। "ଝଂକା" ଉପନ୍ୟାସ ପ୍ରାୟ ୪୫୦ ପୃଷ୍ଠା ବ୍ୟାପୀ। ଏହି ଉପନ୍ୟାସରେ ପ୍ରାୟ ୨୫।୩୦ଟି ଚରିତ୍ର ରହିଛି। କିନ୍ତୁ ନାଟ୍ୟକାର ଚତୁରତାର ସହିତ ଯେଉଁ ଚରିତ୍ର ଗୁଡ଼ିକ ନାଟକପାଇଁ ଦରକାର ସେତକ ରଖି ବାକତକ ବାଦ୍ ଦେଇ ତାଙ୍କର ସୂକ୍ଷ୍ମ ବିଚାରବୁଦ୍ଧିର ପରିଚୟ ଦେଇଛନ୍ତି। × × × × "ଝଂକା" ଉପନ୍ୟାସ ଓ "ଝଂକା" ନାଟକ ଉଭୟ ଉଭୟଙ୍କର ବିଷୟବସ୍ତୁର ଆଦର୍ଶ

ବା ଗୀତ ବାଗରୁ କେହି କାହାଠାରୁ ବଞ୍ଚିତ ନୁହନ୍ତି । କିନ୍ତୁ ଏକ ସୁନ୍ଦର ନାଟକ ଓ ଉପନ୍ୟାସ ହିସାବରେ ଉଭୟର ସ୍ୱାତନ୍ତ୍ର୍ୟ ରହିଛି । × × × ଗୋପାଳବାବୁ ସଂଳାପ ଲେଖା ଯେ ତାଙ୍କର ଖ୍ୟାତି ବଜାୟ ରଖିଛନ୍ତି । × × × ରଙ୍ଗମଞ୍ଚରେ ପ୍ରଥମ କରି ଏପରି ଏକ ବଳିଷ୍ଠ ଉପନ୍ୟାସକୁ ନାଟକ ଭାବରେ ପରିବେଷଣ କରି ଦର୍ଶକଙ୍କର ରୁଚି ବଦଳାଇବା ଉଦ୍ୟମ ବାସ୍ତବିକ୍ ପ୍ରଶଂସନୀୟ ।

'ରବିବାର ପ୍ରଜାତନ୍ତ୍ର' ତା ୧୮ । ୧ । ୫୭ରିଖ

× × × ଶ୍ରେଷ୍ଠ ଉପନ୍ୟାସକୁ ନାଟକରେ ଆଇନ କଟକଣା ଭିତରେ ରଖି ପୂର୍ଣ ଉପନ୍ୟାସର ଚରିତ୍ର ଘଟଣା ଓ ମୂଳ ସତ୍ୟକୁ ଅକ୍ଷୁଣ୍ଣ ରଖିବାର ବାହାଦୁରୀ ନାଟ୍ୟକାର ଗୋପାଳ ଛୋଟରାୟଙ୍କର । × × × ହିନ୍ଦୋଳର ମୂଳତତ୍ତ୍ୱ ହେଲା ମନର ଦ୍ୱନ୍ଦ ଘଟଣା ଓ ପରିସ୍ଥିତି ଭିତରେ ଏକ ମାନବିକ ବିଶ୍ଳେଷଣ । × × × ତେଣୁ ଏହି ନାଟକ ଗତାନୁଗତିକ ନୁହେଁ । ଏଥିରେ ପ୍ରେମର କଳ୍ପନାବିଳାସ ନାହିଁ କି ନଗ୍ନ ଅପରିମାର୍ଜିତ ଦୃଶ୍ୟ ନାହିଁ ଏହା ସାମାଜିକ ସମସ୍ୟା ବହୁଳ ମାନବଜୀବନକୁ ନୂଆ ନିର୍ଦ୍ଦେଶ ଦେଇଛି । × × × ଦୀର୍ଘ - ଉପନ୍ୟାସର ବର୍ଣ୍ଣନା ନ ପଢ଼ି କେତେଗୁଡ଼ିଏ ସାମାଜିକ ସମସ୍ୟା ଓ ତାର ସମାଧାନ ଖୋଜି 'ହିନ୍ଦୋଳ'' ନାଟକରେ ଦେଖିହେବ । ଏଥିପାଇଁ ଉଭୟ ନାଟ୍ୟକାର ଓ ପରିବେଷକ ଧନ୍ୟବାଦାର୍ହ ।

'ରବିବାର ମାତୃଭୂମି' ତା ୨୭ । ୧୦ । ୫୭ରିଖ

× × × ଛୋଟରାୟଙ୍କ ସଂଳାପ ଓ ଦୃଶ୍ୟ ସଂଯୋଜନା ଚମତ୍କାର । ମନେ ହେଲା ଯେ ସେ ସତେ ସଂଳାପ ରଚନା କ୍ଷେତ୍ରରେ ଓଡ଼ିଶାରେ ଅପ୍ରତିଦ୍ୱନ୍ଦୀ । × × × ସଫଳତା ସହିତ ନାଟକଟି

ଜହ୍ଣା ଶେଷ ପର୍ଯ୍ୟନ୍ତ ରଖାଯାଇଛି ଏବଂ ବିଷୟବସ୍ତୁ ଓ ଅଗ୍ରଗତି ମଧ୍ୟ ସୁନ୍ଦର ହୋଇଛି । × × ଗ୍ଲେଟରାୟଙ୍କ ହାତରେ ବିଷୟ ବସ୍ତୁର ବିନ୍ୟାସ ପରିପ୍ରକାଶ ଓ ପ୍ରକାଶ ଚମତ୍କାର ରୂପ ପାଇଛି । ଦ୍ରୁତଗତି ନାଟକର ସଫଳତା ପାଇଁ ଏହା କେତେକ ପରିମାଣରେ ଦାୟୀ । × × × "ଝିନଙ୍କା" ନାଟକ ଦୁ'ଥର ଦେଖିବାକୁ ଯାଇ ଅନ୍ତଃତ ଗୋଟିଏ କଥା ଦେଖିଲି ଆମ ଦର୍ଶକଙ୍କର ରୁଚି ବଦଳିଛି । × × × ଆଶା "ଝିନ୍‌ଙ୍କା"ର ସଫଳତା ପେଷାଦାର ରଙ୍ଗମଞ୍ଚ ତଥା ନାଟ୍ୟକାରମାନଙ୍କର ଆଖି ଖୋଲିଦେବ ।

'ପ୍ରଜାତନ୍ତ୍ର' ତା' ୨୮ । ୧୦ । ୫୭ରିଖ

କାହ୍ନୁଚରଣ ମହାନ୍ତିଙ୍କର ବିରାଟ ଉପନ୍ୟାସର ରୂପ ଦେଇଛନ୍ତି, ନାଟ୍ୟକାର ଗୋପାଳ ଗ୍ଲେଟରାୟ । × × × × ଏହାର ନାଟ୍ୟରୂପ ଓଡ଼ିଆ ମଞ୍ଚ ଇତିହାସରେ ଏହା ଏକ ନୂତନ ଅଧ୍ୟାୟ କହିବାକୁ ହେବ । ଆମ ନାଟ୍ୟକାର, ଆମ ଦର୍ଶକମାନଙ୍କୁ ମଞ୍ଚରେ ଆଜିପର୍ଯ୍ୟନ୍ତ ରୂପଦେଇ ଭେଟୁଥିଲେ, "ଝିନ୍‌ଙ୍କା" ଯେମିତି ସେ ସବୁର ବ୍ୟତିକ୍ରମ । ଆଜିଯାଏ ଆମ ମଂଚରେ ଯେଉଁସବୁ ନାଟକ ପରିବେଷଣ ହୋଇ ଆସୁଥିଲା; ଅଳ୍ପ କେତୋଟିକୁ ବାଦ୍‌ଦେଲେ ସବୁଗୁଡ଼ିକ ପ୍ରାୟ ଏକା ଧରଣର । ନାଟ୍ୟକାର ଗ୍ଲେଟରାୟ ସେହି ଚିରାଚରିତ ଗତ ସ୍ରୋତରେ ଏକ ବିରାଟ ସେତୁ ତିଆରି କରାଇଚନ୍ତି । ତାହାର ପରିଣତି ଯାହା ହେଉ; ଆମ ଦର୍ଶକ ଜନ୍ତୁ ନୂଆପଥର ସନ୍ଧାନ ପାଇଲେ । ଗ୍ଲେଟରାୟଙ୍କର ନାଟ୍ୟରୂପ, ଦୃଶ୍ୟ ପରିକଳ୍ପନା ଓ ସଂଳାପ ଚମତ୍କାର ହୋଇଛି ।

'ଛରଙ୍ଗା' ମାସିକ ପତ୍ରିକା କଲିକତା, ନଭେମ୍ବର ୧୯୫୭

---

'ସନ୍ଧ୍ୟା' କୁ 'ଜନତା' ରଙ୍ଗମଞ୍ଚରେ ପ୍ରଥମ ରଜନୀ ତା ୧୮ - ୧୦ - ୫୭ ରେ ରୂପ ଦେଇଥିଲେ ଯେଉଁମାନେ

ସଂଗଠନରେ:—

ସଙ୍ଗୀତ ରଚନା—ଅଧ୍ୟାପକ ଜାନକୀବଲ୍ଲଭ ମହାନ୍ତି M.A.

ଓ

ନରସିଂହ ମହାପାତ୍ର

ସଙ୍ଗୀତ ସ୍ୱର—ଭୁବନେଶ୍ୱର ମିଶ୍ର

ନୃତ୍ୟ ପରିକଳ୍ପନା—ସୁରେନ୍ଦ୍ର ମହାନ୍ତି

ନୃତ୍ୟ ପରିଚାଳନା—ବୈକୁଣ୍ଠ ସେଣ

ମଞ୍ଚ ପରିଚାଳନା—ବୃନ୍ଦାବନ ବେହେରା

,, ସହକାରୀ—ମଙ୍ଗରାଜ ସଞ୍ଜକିଶୋର

ଆଲୋକ ପରିଚାଳନା—ବ୍ରଜକିଶୋର ଦାସ

ରୂପ ସଜ୍ଜା—ଅନିରୁଦ୍ଧ; ରମଣୀ

ସ୍ମାରକ—ପ୍ରଫୁଲ୍ଲକୁମାର ମିଶ୍ର

ନୃତ୍ୟରେ—ଚନ୍ଦ୍ରଧର, ଦଣ୍ଡପାଣି, ରମଣୀ

ପରିଚାଳନା—ନଟବର ସେଣ

,, ସହକାରୀ—ଶରତକୁମାର ମହାନ୍ତି

ରୂପାୟନରେ:—

ଭୂଷାରକାନ୍ତ—ନିରଞ୍ଜନ ଶତପଥୀ

ଦୁଷ୍ମନ୍ତ—ଭୋଳାନାଥ ଦାସ

ଅବନୀ—ନଟବର ସେଣ

ଗୋପାଳ—ଶରତକୁମାର ମହାନ୍ତି

ରଙ୍ଗଲାଲ—କୃଷ୍ଣଚନ୍ଦ୍ର ପାଣ୍ଡେ

ଜଲାଲଉଦ୍ଦିନ୍—ମହମ୍ମଦ ମହସିନ୍

ତୃପ୍ତି—ପ୍ରଫୁଲ୍ଲକୁମାର ଶାସ୍ତ୍ରୀ

ଅରକ୍ଷ—ଶରତଚନ୍ଦ୍ର ଶତପଥୀ

ସ୍ୱର୍ଣ୍ଣପ୍ରଭା—ମଣିମାଳା ଦେବୀ

ହେମାଙ୍ଗିନୀ—କୃଷ୍ଣମଣି ଦେବୀ

ସୁକାନ୍ତି—ମାଟୁରୀ ଦେବୀ

ମୀର ( ଛୋଟ ) କୁମାରୀ ଅହ୍ଲାଦିନୀ

ମୀର ( ବଡ଼ ) ବାସନ୍ତୀ ଦେବୀ

ରିକ୍ସାବାଲା—କୃଷ୍ଣଚନ୍ଦ୍ର ଦାସ

# ପ୍ରଥମ ଅଙ୍କ

## ପ୍ରଥମ ଦୃଶ୍ୟ

(କଟକ ସହର ରାଜାବଗିଚା ଅଞ୍ଚଳର ଏକ ଅଖ୍ୟାତ ଗଳି ଉପରେ ଥିବା ଏକ କୋଠରୀ । କୋଠରୀଟିର ଦୁରବସ୍ଥା ଏ ଘରର ଅଧିବାସୀଙ୍କ ଦାରିଦ୍ର୍ୟର ସ୍ପଷ୍ଟ ସୂଚନା ଦିଏ । ଦୃଶ୍ୟ ଆରମ୍ଭରୁ ଦେଖାଗଲା, ଗୋଟିଏ ଖଟିଆ ଉପରେ ବସିଛି ତୁଷାର । ତୁଷାର ଯୁବକ, ସେ ଉଚ୍ଚ ଶିକ୍ଷିତ, କିନ୍ତୁ ଅନ୍ଧ; ତେଣୁ ଅକ୍ଷମ । ଦିନେ ଅବଶ୍ୟ ସେ ସୁନ୍ଦର ଥିଲା, କିନ୍ତୁ ମାରାତ୍ମକ ବସନ୍ତ ଦାଗରେ ସେ ଆଜି କୁତ୍ସିତ, କଦାକାର । ସେହି ଘରେ, ତୁଷାରଠୁ ଟିକେ ଦୂରରେ ଛିଡ଼ା ହୋଇଛି ତା'ର ସୁନ୍ଦର ସ୍ତ୍ରୀ କ୍ଷଣପ୍ରଭା । ହାତରେ ଖଣ୍ଡେ ତା'ର ଟାଇପ୍ କରା ଚିଠି । ଚିଠି ଉପରୁ ମୁହଁ ଉଠାଇ ସେ ତୁଷାର ଆଡ଼କୁ ପାଦେ ଆଗେଇ ଯାଇ ପୁଣି ଅଟକି ଗଲା । ତାଙ୍କୁ ଦେଖିଲେ ଜଣାଯାଏ ସେ ଯେପରି ଏକ ଦ୍ୱନ୍ଦରେ ପଡ଼ିଛି । ତୁଷାରକୁ କିଛି କହିବାକୁ ଯାଉଛି, କିନ୍ତୁ କହି ପାରୁନାହିଁ ) ।

ତୁଷାର—ପ୍ରଭା, ପ୍ରଭା—

ପ୍ରଭା—କ'ଣ ?

ତୁଷାର—ଏଠିକି ଆସ—

ପ୍ରଭା— ( ତୁଷାର ପାଖକୁ ଆସିଲା )

ତୁଷାର—ଆସିଲ ପ୍ରଭା—

ପ୍ରଭା—କ'ଣ କୁହ ?

ତୁଷାର—( ହାତରେ ଅଣ୍ଡାଳି ) ଏଇଠି ବସ । (ଧୀରେ ଧୀରେ ଯଣପ୍ରଭା ହାତକୁ ଆଉଁସିବାକୁ ଲାଗିଲା, ଯେପରି ହାତରେ ସେ ସୁନାଗୁନ୍ଦ ପାଇଛି ) ପ୍ରଭା !

ପ୍ରଭା—କୁହ, କ'ଣ କହୁଛ ? ମୋର ଡେରେ ଏକୁଟିଆ କ'ଣ ସବୁ କରୁଛି ।

ତୁଷାର—ଆଗ ଦେଖେଇ ଗୁଳିପିବାକୁ ବସିଛ, ନା ? ଅଂଧ ହୋଇ ଯାଇ କେବେ ତୁମକୁ ତାଙ୍କ ପାଖରେ ବସାଇବାକୁ ସାହସ ହୁଏନା—

ପ୍ରଭା—ନା, ନା, ମୁଁ ଗୁଳି ପିବାକୁ ଚାହୁନି । ଭୋଜ ଡେରେ ବଛଣାରୁ ଉଠି ପାରୁ ନାହାନ୍ତି, କାଶି କାଶି କଣ୍ଠାନ୍ତ ହେଲେଣି । ମୋର ଲୁଅଃ।—ଏବା ବା' ସେ କ'ଣ କରିବ ?

ତୁଷାର—ମୁଁ ଜାଣେ ପ୍ରଭା, ଧନକୁ ଧନ ତମେ କାହିଁକି ମୋତେ ଦୂରେଇ ରଖୁଛ । ଅଂଧ ହୋଇବ ମୁଁ ସଂସାର ଚଳେଇ ନେଉଥିଲି—ଖଣ୍ଡେ ଟିକେ ସମୟରୁ ସବୁ ଚାଲି ଯାଉଥିଲା । ଦୁର୍ଯୋଗ ଆସିଲା, ମଟର ଆକ୍ସିଡେଣ୍ଟ ହେଲା, ମୁଁ ମେଡ଼ିକାଲରେ ପଡ଼ିଲି । ଟିକେ ସମୟ ତ ଗଲା, ତା ସଙ୍ଗେ ସଙ୍ଗେ ତୁମର ଗହଣା ଚେଇଗଣ୍ଡି । ଏଇଛ, ହାତରେ ପାଣିକାଚ ପିନ୍ଧି ସୁନା ହାତକୁ ବଳ ଦେଇଛ,

ହାରଟି ବ ବେକରେ ନାହିଁ । ମୋତେ ଯେତେ ଦୁରେଇ ରହୁଥିଲେବ ଏ କଥା କ'ଣ ଲୁଚବ ?

ପ୍ରଭା— (ଆଖିରେ ଲୁହ) ଏଇଥି ବନ୍ଧୁବ ବୋଲି ମୋତେ ଏଠିକି ଡାକଥିଲ ? ଛାଡ଼, ମୁଁ ଯାଏଁ ।

ତୁଷାର—ଶୁଣ ପ୍ରଭା, ଆଉ ଦୁଃଖ ଦୁର୍ଦ୍ଦଶା କଥା ମୁଁ ଶୁଣିବିନି । ମୁଁ ଶୁଣୁଚି, କେତେଦିନ ତୁମେ ମୋ ପାଇଁ ଇମିତି ଦୁଃଖ କଷ୍ଟ ସହୁଥିବ ? ନିଜକୁ ପଥର କରି ଆଉ କେତେଦିନ ଶାଶୁ, ନଣନ୍ଦ, ଆଉ ଅଂଧ ସ୍ୱାମୀର ବୋଝ ବୋହୁ ଥିବ ? ମୋର ଗୋଟେ କଥା ରଖ, ମୋତେ ଅନୁମତି ଦିଅ—ମୁଁ ପୁଣି ଡିଭୋର୍ସ କରିବ ।

ପ୍ରଭା— ପୁଣି ଡିଭୋର୍ସ କରିବ, ପୁଣି ପଦାକୁ ଯିବ ??

ତୁଷାର—ବନ୍ଧୁ ଅଂଧ ଏ ସହରରେ ଯାଆ ଆସ କରୁଚନ୍ତି ପ୍ରଭା, ତା' ଛଡ଼ା ଦୁର୍ଘଟଣା କ'ଣ ଘଟୁବେଳେ ଜୀବନରେ ଆସେ ?

ପ୍ରଭା—ମୁଁ ସବୁ ବୁଝିଚି । ହେଲେ ତମେ ଘରୁ ଗୋଡ଼କାଢ଼ି ପଦାକୁ ବାହାରିଲେ ଏଣେ ସମସ୍ତେ ଦକ ଦକ, ଏ ଦୁଃଖରୁ ଯେ ସେ ଦୁଃଖ ବଡ଼ ।

ତୁଷାର—କିନ୍ତୁ ସବୁ ଦୁଃଖରୁ ଯେ ତୁମର ଅବସ୍ଥା ବଳି ଯାଉଚି ପ୍ରଭା !

ପ୍ରଭା— ଯା' ହେଲେବି ତମେ ଆଉ ପଦାକୁ ଯାଇ ପାରିବ ନି । ତା ଅପେକ୍ଷା ବରଂ.........(ଅଟକିଗଲା)

ତୁଷାର—କୁହ ପ୍ରଭା ।

ପ୍ରଭା—ତମେ ମୋତେ ଅନୁମତି ଦିଅ......ମୁଁ......

ତୁଷାର—ଡିଭୋର୍ସ କରିବ ?

ପ୍ରଭା—ନା, ଚାକିରି ।

ତୁଷାର—ଚାକିରି ! କି ଚାକିରି ?

ପ୍ରଭା—ମାଷ୍ଟ୍ରାଣୀ । ଦରଖାସ୍ତ କରିଥିଲି, ଚିଠି ଆସିଛି । ଆଜି ଇଣ୍ଟରଭ୍ୟୁ ।

ତୁଷାର—ଇଣ୍ଟରଭ୍ୟୁ ! ଆଜି ? କେଉଁଠି ?

ପ୍ରଭା—ଜୋବ୍ରା ସାର୍ବଜନୀନ ବିଦ୍ୟାଳୟ । ସଂପାଦକ ଉମେଶ-ଚନ୍ଦ୍ର, ଆଜି ଦେଖା କରିବାକୁ ।

ତୁଷାର—ତୁମେ ତା'ହେଲେ ଯାଉଛ ?

ପ୍ରଭା—ଯଦି ତୁମେ ଅନୁମତି ଦିଅ ।

ତୁଷାର—ମୋ ଅନୁମତି ଦରକାର କଣ ? ଆଜିକାଲି ତ ଅନେକ ~~ଅନେକ~~ ଝିଅ ଚାକିରି କରୁଛନ୍ତି । ତୁମେ ମଧ୍ୟ ଯାଅ, ଚାକିରି କର, ରୋଜଗାର କର, ସମସ୍ତେ ସୁଖରେ ରହିବା । ମୁଁ ତ ଅନ୍ଧ, ଅକ୍ଷମ । ତୁମକୁ ପୋଷିବାର ଶକ୍ତି ମୋର ନାହିଁ । ତୁମକୁ ଅନୁମତି ଦେବା ଅଧିକାର ମୋର ଅଛି କେଉଁଠୁ ? ( ତୁଷାର କଣ୍ଠରେ ଅଭିମାନ ସୁସ୍ପଷ୍ଟ )

ପ୍ରଭା—ବୁଝିଛି, ତୁମେ ଅଭିମାନ କରୁଚ—ତୁମ ସ୍ତ୍ରୀ ଯାଇ ପର ଘରେ ଚାକିରି କରିବ; ଏହା ତୁମେ ବରଦାସ୍ତ କରି ପାରୁନ । କିନ୍ତୁ ମୁଁ ଚାକିରି କରୁଚି କାହିଁକି ? ମନର ସଉକ ମେଣ୍ଟାଇବା ପାଇଁ ନୁହେଁ କି ନାରୀପ୍ରଗତିର ଆଦର୍ଶ ପ୍ରଚାର ପାଇଁ ନୁହେଁ । ତୁମେ ସବୁ ଜାଣିଶୁଣି ବୁଝି ଯଦି ଅବୁଝା ହୁଅ—

ତୁଷାର—ଜୋବ୍ରା ସାର୍ବଜନୀନ ସ୍କୁଲକୁ କିଏ ଟଙ୍କା ଯୋଗାଉଛି ଜାଣ ପ୍ରଭା ?

ପ୍ରଭା—ଜାଣେ, ଦୁଷ୍ମନ୍ତ ବାବୁ ।

ତୁଷାର—ସେଇ ଦୁଷ୍ମନ୍ତ, ମୋର ପ୍ରିୟତମ ବନ୍ଧୁ । ହୋଇଥିଲେ ତୁମ ସହିତ ତାର ବିବାହ ମଧ୍ୟ ହୋଇ ପାରିଥାନ୍ତା । କିନ୍ତୁ ସେ ଆଜି ଅବିବାହିତ । ଯାହାକୁ ତୁମେ ଦୁର୍ଯୋଗ କୁହ ବା ଯୋଗାଯୋଗ କୁହ ପ୍ରଭା, ମୋର ସେହି ପ୍ରିୟତମ ବନ୍ଧୁ ଦୁଷ୍ମନ୍ତର ମଟର ଧକ୍କାରେ ମୋର ମୁଣ୍ଡ ଫାଟିଥିଲା । ହୁଏତ ତାର ପ୍ରାୟଶ୍ଚିତ୍ତ କରିବା ପାଇଁ ସେ ଆମକୁ ତା' ଘରେ ଯାଇଁ ରହିବାକୁ ଡାକିଥିଲା । ସେ ପଣ କରିଛି ଦରିଦ୍ରନାରାୟଣଙ୍କ ସେବାରେ ତା ସମସ୍ତ ଜୀବନ କଟେଇଦବ । ଆମେ ତାକୁ ସେଥିରେ ସାହାଯ୍ୟ କରିବା ପାଇଁ ସେ ଆମକୁ ସାଦର ନିମନ୍ତ୍ରଣ କରିଥିଲା । କିନ୍ତୁ ପ୍ରଭା, ତମେ ସେଦିନ, ତାର ସେ ନିମନ୍ତ୍ରଣକୁ ଅତି ସହଜ ଗଳାରେ ପ୍ରତ୍ୟାଖ୍ୟାନ କରିଥିଲ, ଆଉ ଆଜି ସେଇ ଲକ୍ଷପତି ଦୁଷ୍ମନ୍ତର ଟଙ୍କାରେ ଚଳୁଛି ଯେଉଁ ସାଙ୍ଗଳମାନ ବିଦ୍ୟାଳୟ, ସେଠି ତମେ ମାଷ୍ଟ୍ରଣୀ ହେବାକୁ ଯାଉଛ ? ତଫାତ୍‌ଟା କେଉଁଠି—

ପ୍ରଭା—ତଫାତ୍ ଅନେକ । ତାଙ୍କ କାମରେ ତାଙ୍କୁ ଯେତେ ସାହାଯ୍ୟ କଲେ ସୁଦ୍ଧା, ଗୋଟେ ପରିବାରର ବୋଝ ନେଇ ତାଙ୍କ ଘରେ ରହିଥିଲେ—ତୁମେ ହୁଅନ୍ତ ତାଙ୍କର ଦୟାର ପାତ୍ର । କିନ୍ତୁ ମୁଁ ଆଜି ଯାଉଛି ମାସକୁ ଷାଠିଏ ଟଙ୍କା ଦରମା ନେଇ ମୋ ଦେହ ଖଟେଇ ପରିଶ୍ରମ କରିବାକୁ ।

ତୁଷାର—ତଥାପି ହୁଏ ମୁଁ ବୁଝି ପାରୁନି ତଫାତ୍ କେଉଁଠି ?

ପ୍ରଭା—କିନ୍ତୁ ତମର ତ ଏତିକି ବୁଝିବା ଦରକାର ଯେ, ଗୋଟିଏ ଦରିଦ୍ର ଅସହାୟ ପରିବାରକୁ ଚଳେଇବାର ଦାୟିତ୍ୱ ଆଜି ମୋର……।

ତୁଷାର—ନା ପ୍ରଭା, ମୁଁ ବୁଝି ପାରୁନି—ଏ ଦାୟିତ୍ୱ ତମର ନା ମୋର ? ଏ ଯେଉଁ ଅଭାବର ଝଞ୍ଜା ଆଜି ବୋହୁଛି, ତା'କୁ ରୋକିବ କିଏ ? ତମେ ନା ମୁଁ ? ସବୁଦିନେ ମୁଁ ଅନ୍ଧ ନ ଥିଲି ପ୍ରଭା, ସବୁଦିନେ ଅକ୍ଷମ ନ ଥିଲି । ଲକ୍ଷପତି ଦୁଷ୍ମନ୍ତର ମୋହ ଛାଡ଼ି ତୁମେ ହସି ହସି ମୋ ହାତ ଧରିଲ । ସାମାନ୍ୟ ଖଣ୍ଡେ ସବ୍‌ଡେପୁଟି ଚାକିରୀ ମୋର ସମ୍ବଳ ଥିଲା, ତଥାପି ତୁମକୁ ସୁଖରେ ରଖିବାକୁ ମୁଁ ମୋ ଜୀବନ ପଣ କରିଥିଲି । କିନ୍ତୁ ଭାଗ୍ୟ ହୁଏତ ବିରୂପ ହେଲା, ବସନ୍ତରେ ମୁଁ ହେଲି ଅନ୍ଧ, ମୋ ଚାକିରୀ ଗଲା ।

ପ୍ରଭା—ମୁଁ ତ ବାରମ୍ବାର ତୁମକୁ ଅନୁରୋଧ କରୁ ଆସିଛି ଯେ ଅତୀତର ସମସ୍ତ ଦୁର୍ଘଟଣାକୁ ତୁମେ ଭୁଲି ଯାଅ ।

ତୁଷାର—କିନ୍ତୁ ତାହାକୁ ସମ୍ବଳ କରି ମୁଁ ଅତୀତକୁ ଭୁଲିବି ପ୍ରଭା ? ଆମର ବର୍ତ୍ତମାନ କାହିଁ ? ଭବିଷ୍ୟତ କାହିଁ ? ବିବାହର ମାତ୍ର ଛଟୋଟି ବର୍ଷ ପରେ ଆମେ ଜୀବନର ସବୁ ମୋହ ମାଦକତାଠାରୁ ଦୂରେଇ ଯାଇ, ଜୀବନଟାକୁ କେବଳ ବଞ୍ଚେଇ ରଖିବା ପାଇଁ ଆକୁଳ ଚିତ୍କାର କରୁଚୁ, କିନ୍ତୁ ଆମକୁ ବାଟ ମିଳୁନି, ଗଡ଼ା ମିଳୁନି, ( ପ୍ରଭା ଆଉ ସମ୍ଭାଳି ପାରିଲାନି—ହାତ ପାପୁଲିରେ ନିଜ ମୁହଁ ଲୁଚେଇ କାନ୍ଦିଲା ) ମୋତେ ଦେଖ ପ୍ରଭା, ମୁଁ ତୁଷାରକାନ୍ତି ପଟ୍ଟନାୟକ ! ପ୍ରଥମ ଶ୍ରେଣୀରେ ଏମ୍, ଏ,

ପା'ଶ୍ କରିଛ । କିନ୍ତୁ ମୋର ଅଖି ଧର୍ମନ୍ତି ନାହିଁ ବୋଲି ମୋର ଅଳ କିଛି ନାହିଁ, ଏହାର ଚଲେଇବାକୁ ମୁଁ ଅଯୋଗ୍ୟ । ଆଉ ତୁମେ, ଶିକ୍ଷିତା, କଲେଜରେ ପାଠ ପଢ଼ିଛ, ଗୃହକର୍ମ କରିବାର ଯୋଗ୍ୟତା ଥାଇ ମଧ୍ୟ ତୁମେ ଅଯୋଗ୍ୟା । କାରଣ ତୁମେ ନାରୀ, ତୁମେ ଯୁବତୀ, ତୁମେ ସୁନ୍ଦରୀ, ତମେ କରଣ ଘର ବୋହୂ । ( ପ୍ରଭା ଗୃହଳିବାକୁ ଲାଗିଲା ) ତଥାପି ଅମେ ଆମର ଅବସ୍ଥାକୁ ଏଡ଼େଇ ଦେଇ ଗୃହଳିବାକୁ ଚାହୁଁଛୁ—କିନ୍ତୁ ବାଃ ବାହୁ ? ମୁଁ ଅନ୍ଧ ବୋଲି, ଅକ୍ଷମ ବୋଲି, ମୋ ପ୍ରତି ତମର ଯେମିତି କର୍ତ୍ତବ୍ୟ ରହୁଛି, ତମେ ମୋର ସ୍ତ୍ରୀ ବୋଲି ଏ ଘରର ଲକ୍ଷ୍ମୀ ବୋଲି ତମ ପ୍ରତି ମୋର ମଧ୍ୟ ଠିକ୍ ସେମିତି କର୍ତ୍ତବ୍ୟ ରହିଛି— । ଅତଏବ କୁହ ପ୍ରଭା, ବାହାକୁ ପଛରେ ରଖି କିଏ ଆଗେଇ ଯିବ ? ତମେ ନା ମୁଁ ? କୁହ ପ୍ରଭା କୁହ—( ପ୍ରଭା ସେତେବେଳକୁ ଗୃହ ଯାଇଛ) ପ୍ରଭା, ପ୍ରଭା, କୁଆଡ଼େ ଗଲ ପ୍ରଭା ? ପ୍ରଭା—( ପ୍ରାୟ ବାର ତେର ବର୍ଷର ଝିଅ ମୀର ଆସିଲା—ସେ ତୁଷାରର ଭଉଣୀ )

ମୀର—ଭାଇ—

ତୁଷାର—କିଏ, ମୀର ? ତୋ ନୂଆବୋଉ କୁଆଡ଼େ ଗଲେ ?

ମୀର—ନୂଆବୋଉ—?

ତୁଷାର—ଏଇଟି ଥିଲେ, ସେଠେଇ ଘରକୁ ଗଲେ ପରା ଡାକିଲୁ ।

ମୀର—ନାହିଁ ଭାଇ, ନୂଆବୋଉ ତ·········

ତୁଷାର—କଣ ହେଲା ମୀର ?

ମୀର—ନୂଆବୋଉ କୁଆଡେ ବାହାରକୁ ଗଲେଣି ।

ତୁଷାର—ବାହାରକୁ ଗଲେଣି—କୁଆଡ଼େ ? ତୋତେ କିଛି କହୁ ନାହାନ୍ତି ?

ମୀର—ଏ ଘରୁ ତ ଲୁହ ପୋଛି ପୋଛି ଦାଣ୍ଡଘରକୁ ଗଲେ, ମୋତେ ତୁମ ପାଖକୁ ଆସିବାକୁ କହି, ରିକ୍ସାରେ ଚଢ଼ି ବାହାରକୁ ଗଲେ ।

ତୁଷାର—ହୁଁ । (ହଠାତ୍ ତୁଷାର ହସିଉଠିଲା—କପଟରକ୍ତ ଏକ ଭୟଙ୍କର ହସ—ମୀର ଯିମିତି ଡର ଗଲା)

ମୀର—ଜଣ ହେଲା ଭାଇ, ନୂଆବୋଉ କୁଆଡ଼େ ଗଲେ ?

ତୁଷାର—( କିଛି କହି ପାରିଲାନି, ଅଣ୍ଟାଳି ଅଣ୍ଟାଳି କମିଜ୍‌ଟା ଆଣି ପିନ୍ଧିଲା) ମୋ ବଟି ଧରିଚୁ ? ( ମୀର ବଟି ଆଗେଇ ଦେଲା—ତୁଷାର ବଟି ପିନ୍ଧିଲା ) ମୋର ଟିକେ କାମ ଅଛି ମୀର ? ମୁଁ ଯାଉଛି, ନୂଆବୋଉ ଆସିଲେ କହିବୁ ମୋର ଫେରିବାକୁ ହୁଏ ତ ଡେରି ହେବ ।

ମୀର—ତମେ କୁଆଡ଼େ ଯିବ ଭାଇ ? କେତେ ଯିବ ?

ତୁଷାର—ଦୁନିଆଁରେ ଏତେ ଅନ୍ଧ ଅଛନ୍ତି, ମୁଁ ଯିମିତି ଅଣ୍ଟାଳି ଅଣ୍ଟାଳି ଯିବି । ଅଭ୍ୟାସ ହେଇ ଯିବ ତ······

ମୀର—ନାହିଁ ଭାଇ, ତୁମେ ଯାଅନି—

ତୁଷାର—( ସ୍ନେହମିଶା କଣ୍ଠରେ ) ତୋ ନୂଆବୋଉ କୁଆଡ଼େ ଗଲେ ତାକୁ ଅଟକେଇ ପାରିଲୁନି ! ଆଜି ମୋତେ ଅଟକଉଚୁ ?

ମୀର—ବୋଉ ମନା କରିଛି, ତମେ ଆଜି ପଦାକୁ ଯାଅନି ।

ତୁଷାର—ଛି ମୀର, ତୁ ପିଲାଲୋକ, କିଛି ଜାଣିନୁ । ମୁଁ ଅବନୀ ବାବୁଙ୍କ ଘରକୁ ଯାଉଛି—ଟିକସନ୍ ଯୋଗାଡ଼ରେ··· ଦେଖିବୁ ଭଲରେ ଫେରି ଆସିବି ।

ମାଉ—ତା ହେଲେ ଭାଇ ଶୁଣ, ମୁଁ ତୁମ ପାଖରେ ଥିବି । ତମ ହାତ ଧରି ତୁମକୁ ବାଟ କଢ଼େଇ ନେବି ।

ତୁଷାର—( ମୁହୂର୍ତ୍ତିକ ପାଇଁ ନର୍ବାକ ହୋଇ ) ଏ ଜୀବନ ସଂଗ୍ରାମରେ ତୁ ପଥ ସାଥି ଦେବାକୁ ବସିଲୁଣି—ହଁ, କିନ୍ତୁ ଆଜ ନୁହେଁ, ହୁଏତ ଦିନେ ତୋତେ ସେଇଆ କରିବାକୁ ପଡ଼ିବ……ବାହାରେ ଘଣ୍ଟି ଶୁଭୁଛି, ରାସ୍ତାରେ ଖାଲି ରିକ୍ସା ଯାଉଛି ନା ଦେଖିଲୁ । ( ମାଉ ଚାଲିଗଲା )

— ପରଦା —

## ଦ୍ୱିତୀୟ ଦୃଶ୍ୟ

( କଟକ ସହରର ଏକ ରାସ୍ତା-ଭିତରୁ ରିକ୍ସା ଘଣ୍ଟି ସହିତ ରିକ୍ସାବାଲା ଓ ତୁଷାରର ପାଟି ଶୁଣାଗଲା )

ରିକ୍ସାବାଲା—( ଭିତରୁ ) ବାବୁ, ଏଇଟା ଅବନୀ ବାବୁଙ୍କ ଘର, ଏଇଟି ରଖିବି ନା ଫାଟକ ଭିତରକୁ ନେବି ?

ତୁଷାର—( ଭିତରୁ ) ନା, ଫାଟକ ବାହାରେ ରଖ । ( ତୁଷାର ଓ ରିକ୍ସାବାଲା ଆସିଲେ )

ରି·ବାଲା—ମୋତେ ବିଦାକର ବାବୁ, ମୁଁ ଯାଏଁ ।

ତୁଷାର—କେତେ ନବୁ ?

ରି·ବାଲା—ରାଜାବଗିଚାରୁ ମହମ୍ମଦିଆ ବଜାର, ଗଦାଏ ବାଟ, ଆପଣ ଯାହା ବିଚାର କରି ଦେବେ ।

ତୁଷାର—ଅଚ୍ଛା, ଅଚ୍ଛା । ( ପକେଟ ଖୋଜିଲ—କିନ୍ତୁ ପକେଟରେ କିଛି ନାହିଁ—ସେ ପଇସା ଆଣିବାକୁ ଭୁଲି ଯାଇଛି )

ରି.ବାଲା—କଣ ହେଲା ବାବୁ, ଝୁଟୁରୁ ନାହିଁ—ନୋଟ ଭାଂଗେଇବେ ?

ତୁଷାର—ନୋଟ......

ରି.ବାଲା—ଦଅନା ନେହିତ ଟଙ୍କାର ନୋଟ୍ ମୁଁ ଭଙ୍ଗାଇ ଆଣୁଛି ।

ତୁଷାର—ଅଚ୍ଛା ଦେଖିଲ, ତାଙ୍କ ହତାଭିତରେ କିଏ ଅଛନ୍ତି କି ?

ରି.ବାଲା—( ଦେଖି ) କେହିତ ମାଲୁମ୍ ପଡୁନାହାନ୍ତି ?

ତୁଷାର—ବାରଣ୍ଡାରେ—

ରି.ବାଲା—( ଦେଖି ) ଦଟା ଅଲସାନ୍ କୁକୁର—

ତୁଷାର—ଆଉ କେହି ନାହାନ୍ତି ?

ରି.ବାଲା—( ବିରକ୍ତ ହୋଇ ) କ ମୁସିବତ୍ ବାବୁ, ( ଦେଖି ) ଜଣେ କିଏ ଟୋକା ବାବୁ ବୁଲୁଛନ୍ତି, ଡାକିବି ?

ତୁଷାର—ନାଇଁ ତୁ ଟିକେ ରହ, ମୁଁ ଫଗେ ଫଗେ ଯାଇ ସାଇ ଫେରି ଆସିବି, ମୋତେ ପୁଣି ଘରେ ପହଞ୍ଚେଇ ଦେବୁ, ଦୁ ତରଫର ଭଡ଼ା ପାଇବୁ ।

ରି.ବାଲା—ନାଇଁ ନାଇଁ ବାବୁ, ମୋର ଢ଼ନ ଗାଡ଼ି—ମୋ ଭଡ଼ା ମୋତେ ଦେଇଦିଅ, ମୁଁ ଯାଏଁ ।

ତୁଷାର—( ରହ ରହ ) ସିବୁ......

ରି.ବାଲା—କଣ ହେଲା ବାବୁ, ମୋ ପଇସା ଦିଅ ।

ତୁଷାର—ମୁଁ ତ ପଇସା ଆଣିବାକୁ ଭୁଲିଗଲି ।

ରି.ବାଲା—( ଚେଇଯାଇ ) କ'ଣ ହେଲା ?

ତୁଷାର—ଘରୁ ପଇସା ଆଣିବାକୁ ଭୁଲିଗଲି ।

ର.ବାଲା—ବାଃ ବାବୁ, ଖାସ୍ ଭଦ୍ରଲୋକ ତ ତମେ ?

ତୁଷାର—କଣ କରିବ କୁହ, ତରବରିଆରେ ଛାଡ଼ିଦେଇ ଆସିଲି—ଅନ୍ଧ ମଣିଷ ।

ଝି.ବାଲା—ରଖ ହୋ ତମ ଗୁଲାକି—ଅନ୍ଧ ହେଲେ ତ ମୋର କଣ ଗଲା ? ଖାଉଛ, ପିଉଛ ସବୁ କରୁଛ—ପଇସା ଦେଲାବେଳକୁ କଣ ନା ଅନ୍ଧ । ମୋ ଝାଳବୁହା ଧନ ବାବୁ, ମୋତେ ଦେଇ ଦିଅ କହୁଛି ।

( ଏଇ ସମୟରେ ଜଣେ ଭଦ୍ରଲୋକ ଆସିଲେ )

ଭଦ୍ରଲୋକ—ଏ ହଲ୍ଲା କିଏ କରେ ?

ଝି.ବାଲା—କଣ ଆଉ କିଏ ବାବୁ ? ଦେଖୁନ ?

ଭଦ୍ରଲୋକ—କଣ ହେଲା ?

ଝ.ବାଲା—ଝକହାରେ ଆସି ବାବୁ ପଇସା ଦେଇ ନାହାନ୍ତି ।

ଭଦ୍ରଲୋକ—( ତୁଷାରକୁ ) ଦେଇ ଦିଅନ୍ତୁ ଆଜ୍ଞା ତା ପଇସା—ଗରିବ ଲୋକ ।

ତୁଷାର—ମୁଁ ତାକୁ କହୁଛି···

ଝ.ବାଲା—ଚୁପାଣ୍ଠା କହୁଛ, କଣ କହୁଛ ? ମୋ ପଇସା ଦେଇ ଦିଅ, ନାହିଁ ତ

ଭଦ୍ରଲୋକ—ବିଚରା ଅନ୍ଧ ଲୋକ—କଣ କହୁଛନ୍ତି ଶୁଣ ।
( ତୁରକୁ ଲକ୍ଷ୍ୟ କରି )—ଏ ହଲ୍ଲା ରହ, ରହ । (ପ୍ରସ୍ଥାନ)

ଝ.ବାଲା—ତମକୁ ଆଣି ମୋର ହବୁ ଲୋକସାନ୍, ସକାଳିଆଟା ଖସିଗଲା ।

ତୁଷାର—ତୁ ବିଶ୍ୱାସ କର ବାବୁ, ମୁଁ ଭୁଲରେ ପଇସା ଛାଡ଼ି ଦେଇ ଆସିଲି । ଅଚ୍ଛା, ତୁ ଗୋଟେ କାମ କର, ମୋର

ଏଠିକା କାମ ଯେତେ ନ ହେଲା ନାହିଁ, ତୁ ମୋତେ ଫେରାଇ ନେଇ ଚାଲ, ଘ ପିଠିରେ ଲଡ଼ା ଦେବୁ ।

୧.ବାଲ—ଭଲ ଅକଲ ମୋତେ ଶିଖାଉଚ । ଥରେ ଆଣି ତ ଏଇ ଦଶା, ଫେରେଣ ନେଇ ଗଲେ ଗାଲ ଅଜାଡ଼ ପଡ଼ିଯିବ । ଯାଉଛିଲେଟ ପଇସା ନାହିଁ, ବାକ୍ସାରେ ବସିବାକୁ ସହଜ ଜାଣୁଛ ?

ତୁଷାର—କଣ ଆଜ କରିବ ଭାଇଲୁ ?

୨.ବାଲ—ଆମ ଗସ୍ତବଙ୍କ ପଇସା ଖାଇ ଢ଼’ ମହଲ କୋଠା କର, ମାଇପ ପାଇଁ ସୁନା ଗହଣା କର, ଆଜ କଣ କରିବ ? ସେଦିନ ସିମିତ ଗୋଟେ ଫ୍ଲୋଟା ମୋ ବାକ୍ସାରୁ ଓହ୍ଲାଇ ଗୋଟେ ଅଫିସର ଏ ପାଖରେ ପଶି ସେ ପାଖରେ ବାହାରି ଗଲା, ମୁଁ ଦେଖେ ଅନେଇ ରହିଲି । ହେଇତ କାଳ ମୋଡ଼ ହେଉଛି, ଆଜ ଦେଖିବ ଯଦ ଅନ୍ଧ, ଲେଙ୍ଗଡ଼ା, କେମ୍ପା, କୁଜା, ଗୋଦଡ଼ାଙ୍କୁ ବାକ୍ସାରେ ବସାଇଛି ତ, ଆରେ, ଭଲରେ ଦୁନିଆଁ ନାଇଁ ହେ ! ତୁମେ ଅନ୍ଧ ଲୋକ ବୋଲି ତୁମକୁ ଗୁଣ ଦେଲ ଆଜି କେହୁ ହେଇଥିଲେ ତା ମଜୁର ଢ଼’ ଭଡ଼ାର କରି ଦେଇଥାନ୍ତ ।

( ବାକ୍ସାବାଲ ଚାଲିଗଲେ, ତୁଷାର ସ୍ତମ୍ଭୀଭୂତ ହୋଇ ଠିଆ ହୋଇଥାଏ )

—ପରଦା—

# ତୃତୀୟ ଦୃଶ୍ୟ

( ବଣିକ୍ଷ୍ମ ଧନୀ ଓ ବ୍ୟବସାୟୀ ଅବନୀ ବାବୁଙ୍କ ସୁସଜ୍ଜିତ ବୈଠକଖାନା—ଦୃଶ୍ୟ ଆରମ୍ଭରେ ଦେଖାଗଲା ଅବନୀ ବାବୁ ଫୋନ୍‌ରେ କଥା ହେଉଛନ୍ତି )

ଅବନୀ—( ଫୋନ୍ ଧରି ) କିଛି ଚିନ୍ତା ନାହିଁ, ବୁଝିଲେ ମ୍ୟାନେଜର ବାବୁ ! ଆପଣ କିଛି ଚିନ୍ତା କରନ୍ତୁ ନାହିଁ । ତିନି ଦିନ ହେଲା କାମ ବନ୍ଦ ହେଲାଣି, ଆଉ ଦଶ ଦିନ ବନ୍ଦ ହେଉ । କିନ୍ତୁ ଷ୍ଟ୍ରାଇକ ଧର୍ମଘଟରେ ଥରେ ଓହ୍ଲାଇଲେ ଆଉ ରକ୍ଷା ନାହିଁ । ହିଁ......କଣ......କହୁଲେ......ଓ......ଆଉ ଦିନେ ଦୁ'ଦିନ ଯାଉ ସେ କଥା ବିଚାର କରିବା । ସବୁ କାରଖାନାରେ ପୁଲିସ ପହରା ରହୁଛନ୍ତି ତ ? ଅଛି ଅଚ୍ଛା......ହିଁ, ଗୋପାଳ ବାବୁ ତଳେ ଅପେକ୍ଷା କରୁଛନ୍ତି । ମୁଁ ବର୍ତ୍ତମାନ ତାଙ୍କ ସହିତ କଥାବାର୍ତ୍ତା କରିବି । ଅଚ୍ଛା, ନମସ୍କାର । ( ଫୋନ୍ ରଖି ଡାକିଲେ ), ଶ୍ୟାମ, ଶାମ, ( ଶାମ ଆସିଲା, ତାଙ୍କ ଘରର ଚାକର ଶାମ ସାଥିରେ ତୁଷାର ମଧ୍ୟ ଆସିଚି । ) ତଳେ ଗୋପାଳ ବାବୁ ଜଣଙ୍କ ବସିଚନ୍ତି, ଡାକି ଦେ । ଆରେ, ତୁଷାର ବାବୁ ଯେ...ନମସ୍କାର—ବସନ୍ତୁ, ବସନ୍ତୁ ।

( ତୁଷାରକୁ ସୋଫା ଉପରେ ଧରି ବସେଇ ଦେଲେ )

ଅବନୀ—ଶ୍ୟାମ, ଅରୁଣର ମାଷ୍ଟ୍ର ଆସିଲେଣି ?

ଶାମ—ଆଜ୍ଞା—

ଅବନୀ—ହଉ ତୁ ଯା ( ଶ୍ୟାମ ଚାଲିଗଲା ) ଅରୁଣ ପାଇଁ ଜଣେ ନୂଆ ମାଷ୍ଟର ରଖିଲି ତୁଷାର ବାବୁ !

ତୁଷାର—ନୂଆ ମାଷ୍ଟର ?

ଅବନୀ—ହଁ, ପହିଲିରୁ ସେ ରହୁଛନ୍ତି । ସେ ମଧ୍ୟ ଏମ୍. ଏ. ପାସ୍ କରିଛନ୍ତି । ଦୁର୍ଯୋଗରୁ ଆପଣଙ୍କର ଅକ୍ସିଡେଣ୍ଟ ହେଲା । ନହିଲେ ଆପଣ ଯାଇଥାନ୍ତେ ତାଙ୍କ ଜାଗାରେ, ନୂଆ ମାଷ୍ଟର ତା ରହିଥାନ୍ତେ ତାଙ୍କ ? ଆଜି ଖବର ଜଣେ କୁହନ୍ତୁ, ଆମ ଖବର ଶୁଣିଛନ୍ତି ତ ?

ତୁଷାର—କଣ ?

ଅବନୀ—ତାଙ୍କ ଅଜ୍ଞା କହୁଚନ୍ତି, ଷ୍ଟ୍ରାଇକ, ମୋର ସବୁ ଯାଉ କାରଖାନା ବନ୍ଦ ।

ତୁଷାର—ଷ୍ଟ୍ରାଇକର କାରଣ ?

ଅବନୀ—ଆଜ ଦ୍ୱିତୀୟ କାରଣ କଣ ଥାଇପାରେ, ଦଂଷ୍ଟ୍ରାଏ ବେକାର ଶସ୍ତାରେ ନାଁ ଲେଖାଇବାକୁ ନେତା ସାଜିଛନ୍ତି । ବାରଅଞ୍ଜୁ ଗୁହା ଉଠାଇ ପେଟ ପୋଷୁଛନ୍ତି । ଆଜି ସେଇ ମାନଙ୍କ କଥାରେ ମାତି ଏ ମୂର୍ଖ କୁଲି ମୂଲିଆଙ୍କ ଯେତେ ସବୁ ଅସମ୍ଭବ ଦାବୀ, ଯୁଆ ଦଅ, ତା ଦଅ, ନ ହେଲାରୁ ଷ୍ଟ୍ରାଇକ୍ । ଆରେ ବାବୁ, ଦବାର ତ ଗୋଟେ ସୀମା ଅଛି । ( ବାହାରକୁ ଚାହିଁ ) ଏଇ ତ ଗୋପାଳ ବାବୁ ଆସିଲେଣି ।

( ପରଦା ଆଢ଼େଇ ଗୋପାଳବାବୁ ଆସିଲେ । ସେ ଜଣେ ଉଗ୍ରପନ୍ଥୀ ଶ୍ରମିକ ନେତା ବୟସ ପ୍ରାୟ ୩୦ । ଆଖିରେ ମୋଟା ଫ୍ରେମର ଚଷମା । )

ଅବନୀ—ନମସ୍କାର ଗୋପାଳ ବାବୁ ।

ଗୋପାଳ—ନମସ୍କାର ।

ଅବନୀ—ବସନ୍ତୁ । (ଗୋପାଳବାବୁ ବସିଲେ) ଆଗେ ଆପଣମାନଙ୍କୁ ପରିଚୟ କରାଇ ଦିଏ । ତୁଷାର ବାବୁ, ଏଇ ହେଉଛନ୍ତି

ଶ୍ରୀ ଗୋପାଳଚନ୍ଦ୍ର ପ୍ରଧାନ, ଶ୍ରମିକ ନେତା । ଆଜ୍ଞ ଇଏ ହଜଚନ୍ତି ତୁଷାରକାନ୍ତ ପଟ୍ଟନାୟକ ଏମ୍. ଏ. । ସର୍‌-ଭେପ୍ରୁଟି ଗୃକରୀ କରୁଥିଲେ, ମାଏ ଛଅ ବରଷ ପରେ ବସନ୍ତ ରୋଗରେ ଆଖି ଦୁଇଟି ହରାଇବା ଫଳରେ ଚାକରୀ ଯାଇଛି ।

ଗୋପାଳ—ନାଁ ଶୁଣିଛି । ବର୍ତ୍ତମାନ କ'ଣ କରୁଚନ୍ତି ? ଗଭର୍ଣ୍ଣ-ମେଣ୍ଟରୁ କିଛି ସାହାଯ୍ୟ ମିଳେ ?

ତୁଷାର—ନା—

ଗୋପାଳ—ଏଇଥିରୁ ବୁଝନ୍ତୁ ଆମ ସରକାରର ରୂପ ରେଖ କଣ ? ଅନ୍ୟ କୌଣସି ସଭ୍ୟ ଦେଶରେ ଏ ଅବସ୍ଥାର ଦେଖିବାକୁ ମିଳନ୍ତା ନାହିଁ ।

ଅବନୀ—ଶୁଣିଛି, ଆମେରିକାରେ ଏଭଳି କ୍ଷେତ୍ରରେ ଇନ୍‌ଭ୍ୟାଲିଡ୍‌ ପେନ୍‌ସନ୍‌ ଦେବାର ବ୍ୟବସ୍ଥା ରହିଛି ।

ଗୋପାଳ—ଆମେରିକା କଥା ଛାଡ଼ନ୍ତୁ । ବାଣିଜ୍ୟ ବ୍ୟବସାୟ ନାଁରେ ଅନ୍ୟ ଦେଶ ଲୋକଙ୍କର ରକ୍ତ ଶୋଷି ସେମାନେ ନିଜ ଦେଶ ପାଇଁ ସବୁ କିଛି କରିପାରନ୍ତି । ଆଜ୍ଞ ଆପଣମାନଙ୍କ ଭଳି ବୁର୍ଜ୍ଜୁଆଙ୍କ ଆଖିରେ କେବଳ ଆମେରିକାହିଁ ଧରା ପଡ଼େ । ଆପଣ ରୁଷିଆ, ଚୀନ୍‌ଆଡ଼େ ଆଖି ଫେରାନ୍ତୁ । ସେଇଠି ପ୍ରକୃତ ଲୋକସର୍କାର ଗଢ଼ାହୋଇ ପାରିଛି ।

ତୁଷାର—(ହସି) କ୍ଷମା କରିବେ । ଅବନୀ ବାବୁଙ୍କ କାରଖାନାରେ ଷ୍ଟ୍ରାଇକ୍‌ ହେଇଛି ବୋଲି ଗୋପାଳବାବୁ ଶ୍ରମିକମାନଙ୍କ ତରଫରୁ ତାର ସମାଧାନ କରିବାକୁ ଆସିଚନ୍ତି । କିନ୍ତୁ ପ୍ରଥମରୁ ଯଦି ଆପଣ ଦୁହେଁ କଣେ ଆମେରିକାର ଓ

ଅଜ୍ ଜଣେ ଗରିବର ପ୍ରତିନିଧିତ୍ୱ କରନ୍ତି, ତେବେ ମୋର ଆଶଙ୍କା ହେଉଛି, ଏଇ ବୈଠକଖାନାଟି ଅବ ପୃଥିବୀ ପଞ୍ଚାୟତ ସଭାଗୃହର ଅବସ୍ଥା ନେଉଛିନି।

(ଗୋପାଳବାବୁ ଓ ଅବନୀବାବୁ ଦୁହେଁ ହସି ଉଠିଲେ)

ଅବନୀ—ବେଶ୍ ଗୋଟେ ମଜା କଥା ଆପଣ କହିଲେ ଭୂଷାର ବାବୁ। ହଁ, ବର୍ତ୍ତମାନ ତାଙ୍କ ହେଲେ କଥା ପଡ଼ୁ ଗୋପାଳ ବାବୁ। ଯେଉଁପରି ଅନ୍ୟାୟ ଭାବରେ ଶ୍ରମିକମାନେ ତାଙ୍କର ଦାବୀ ବାଢ଼ି ବସିଛନ୍ତି, ତା'ର ମୀମାଂସା କଅଣ କେବେ ହେଲେ ସମ୍ଭବ ?

ଗୋପାଳ—ଆପଣ ଗୁହିଁଲେ ନିଶ୍ଚୟ ମୀମାଂସା ହେବ। ସାତଶହ ମଜଦୁର ଜଣ ମନ ଖୁସିରେ ତନ ଧନ ହେଲା କାମ ବନ୍ଦ କରି ବସିଛନ୍ତି।

ଅବନୀ—ମନ ଖୁସିରେ ବୋଲି କମିତ କହୁଛ ? ସେମାନେ ସିନା କାମ କରନ୍ତି ମୋ କାରଖାନାରେ, ତାଙ୍କ ମନଟି ବନ୍ଧା ପଡ଼ିଥାଏ ଆପଣଙ୍କ ପାଖି ଅଫିସରେ। ସେମାନଙ୍କର ନିଜର ମନ ବୋଲି ଗୋଟେ ପଦାର୍ଥ କିଛି ନାହିଁ। ଆପଣଙ୍କର ମନରେ ସେମାନଙ୍କର ମନ। ଅତଏବ, ସେମାନେ କେଉଁ ମନ ଦେଇ ଷ୍ଟ୍ରାଇକ୍ କରିଛନ୍ତି ସେ କଥା ମୋ ଅପେକ୍ଷା ଆପଣଙ୍କୁ ଭଲ ଜଣା।

ଗୋପାଳ—ଅମ ଉପରେ ଦୋଷ ଲଦି ଦେଇ ଅପଣ ଖସିଯିବାର ଚେଷ୍ଟା କରନ୍ତୁ ନାହିଁ। ଠିକ ସିଏବ। ଆପଣ ଜଣ ଭାବୁଛନ୍ତି ଯେ, ଚିରଦିନ ଏଇ ସର୍ବହରା କୁଲି ମୂଲିଆଙ୍କୁ ଶୋଷଣ କରି ଆପଣମାନେ ଫାଇଦା ଉଠେଇ ଗ୍ଭଲିଥିବେ। କେହି ଯୁକ୍ତି ରୋକିବେ ନାହିଁ।

ଅବମା—ଏଇ ଶୋଷଣ, ଫାଇଦା ପ୍ରଭୃତି କଥା ଗୁରୁ ଗଣ୍ଡ-ଗୋଳିଆ। ଆମେ ଯଦି ସେମାନଙ୍କ ଶ୍ରମ ଶୋଷଣ କରି, ସେଥିରୁ ଫାଇଦା ଉଠେଇ, ଏଇ ବୋଠାବାଡ଼ି ସଂପତ୍ତି କରିଛୁ ବୋଲି ଅଭିଯୋଗ ହେଉଥାଏ, ଆପଣମାନେ ସେମାନଙ୍କର ସରଳ ମନକୁ ଶୋଷଣ କରି, ସେଥିରୁ ଫାଇଦା ଉଠେଇ ଆ...ା ଇଲେକ୍‌ସନ୍‌ରେ ଜିତି ମନ୍ତ୍ରୀ ହେବାର ସ୍ୱପ୍ନ ଦେଖୁଛନ୍ତି। ଫଳରେ ସଂଘର୍ଷଟା ଲାଗି ରହିଛି ଆମ ଭିତରେ। ସେମାନଙ୍କର ଅବସ୍ଥା ହେଉଛି ଠିକ୍ ମହାଭାରତର ଶିଖଣ୍ଡି ପରି ! କଣ ମୁଁ ଠିକ କହୁଛି ?

ଗୋପାଳ—ଖାଲି ଠିକ୍ ତ ନୁହେଁ, ଶ୍ରମିକ ଆନ୍ଦୋଳନକୁ ଦବାଇ ଦେବା ପାଇଁ ଇଏ ପୁଞ୍ଜିପତିମାନଙ୍କର ଗୋଟେ ନୂଆ ଅସ୍ତ୍ର-ଧପ ଧାବାଳ

ଅବମା—ହବୁଦେଲେ ଯେ ଆପଣ ପୁଞ୍ଜିପତି ବୃଞ୍ଜିପତି ବୋଲି ଆକ୍ଷେପ କରୁଛନ୍ତି—ପୁଞ୍ଜିପତି ହବାର ଦୋଷଟା କୋଉଁଠି ମୁଁ ବୁଝିପାରୁନ।

ଗୋପାଳ—ମୋ ମତରେ ପୁଞ୍ଜିପତି ଆଉ ଚୋରର, ଡକାୟତ, ଖୁଣୀଙ୍କ ଭିତରେ ଏବେ କିଛିହେଲେ ତଫାତ ନାହିଁ। ଆଇନ କାନୁନ ନାଁରେ ଆପଣମାନେ ପାର ହୋଇ ଯାଉଛନ୍ତି। ନହେଲେ ଖୁଣୀ ଆସାମୀଙ୍କ ପରି ଆପଣମାନେ ବି ଫାଶୀ କାଠରେ ଝୁଲନ୍ତେ।

ଅବମା—( ହସି ) କଥା କହୁ କହୁ ଅପଣ ଯାଇ ଫାଶୀ କାଠରେ ପହଁଚିଲେଣି। ମୋ ମୁହଁକୁ ଅନେଇ ଆପଣ ମୋତେ ଚୋର, ଡକାୟତ, ଖୁଣୀ ଇତ୍ୟାଦି ଉପାଧିରେ ଭୂଷିତ

କଲେଣି । ଭଲ କଥା । ଏଥରକ ମୋ କଥାଟା ମୁଁ ଖୋଲଖୋଲି କୁହେ ।

ଗୋପାଳ—କହନ୍ତୁ, (ଏଇ ଅବସରରେ ଅବନୀ ସିଗ୍ରେଟ୍ କେଶ୍ ଖୋଲିଲେ )

ଅବନୀ—ସିଗ୍ରେଟ୍ ?

ଗୋପାଳ—( ମନାକରି ) ଧନ୍ୟବାଦ

ଅବନୀ—ତୁଷାର ବାବୁ, ସିଗ୍ରେଟ୍ ?

ତୁଷାର—ନା, ମୁଁ ଆଜି ଖାଉନି । ( ଅବନୀ ଏକା ସିଗ୍ରେଟ୍ ଧରିଲେ)

ଅବନୀ—ଆଚ୍ଛା, ଏଇ ଯେଉଁ ସାଧାରଣ ଲୋକଙ୍କୁ ମତାଇ ଆପଣ ଧର୍ମଘଟ କରାଉଛନ୍ତି, ଏମାନେ ଥିଲେ କୋଉଠି ?

ଗୋପାଳ—ସ୍ୱର୍ଗରେ ନ ଥିଲେ କି ପାତାଳରେ ନ ଥିଲେ, ଏଇ ମର୍ତ୍ତ୍ୟରେ ଥିଲେ ।

ଅବନୀ—ସାତ ବର୍ଷ ଚେଷ୍ଟା କରିଥିଲେ ଆପଣ ଏ ସାଧାରଣ ଲୋକଙ୍କୁ ଏକାଠି କରାଇ ପାରିଥାନ୍ତେ ନା ?

ଗୋପାଳ—କ'ଣ ଆପଣ କହୁଛନ୍ତି ?

ଅବନୀ—ମୋର ବୁଦ୍ଧି, ବୃତ୍ତି, ଧନ, ସମ୍ପତ୍ତି ସବୁ କିଛି ଖଟେଇ ମୁଁ କାରଖାନା ବସେଇଲି । ସେମାନେ ଆସି କାମ କଲେ । ତା'ପରେ, ସାଧାରଣ ବଢ଼େଇ ବାରବର୍ଷ କାମ କଲା ପରେ, ଧର୍ମଘଟର ଅବସର ପାଇ ଆପଣ ଆଜି ଧର୍ମଘଟ ସାଜ ଦେଇକି ମୁଣ୍ଡ ମାରିବାକୁ ଆସିଛନ୍ତି । କିନ୍ତୁ ଏଠି ଯଦି ଏମାନଙ୍କୁ କାମ ଯୋଗାଇ ନ ଦିଆ ଯାଇଥାନ୍ତା, ତେବେ ଏଇ ସାଧାରଣ ଲୋକ ଯେ ତାଙ୍କ ଗାଁ ଭୂଇଁରେ ଆଜି କଲିକତା ଟେଣ୍ଟଲରେ ସଢ଼ୁଥାନ୍ତେ—ଏ କଥା ଆପଣ କେବେ ଭାବୁଛନ୍ତି କି ?

ଗୋପାଳ—ଏଇ କଥା ! ! ଏମାନଙ୍କୁ କାମ ଯୋଗାଇ ଆପଣ ତାଙ୍କ ସପ୍ତ ପୁରୁଷକୁ ଉଦ୍ଧାର କରୁଚନ୍ତି ବୋଲି ଭାବୁଚନ୍ତି ନା ? କିନ୍ତୁ ମନେ ରଖନ୍ତୁ, ସେମାନେ ଯେଉଁଠି ରହନ୍ତୁ ନା କାହିଁକି ସେମାନେ ସେଇ ସର୍ବହରା, ସେଇ ଦଳିତ, ନିଷ୍ପେଷିତ, ମଜଦୁର । ଆପଣ ସେମାନଙ୍କର ମୂଳ ଦାବୀକୁ ଯଦି ଗ୍ରହଣ ନ କରନ୍ତି, ତେବେ ସେମାନେ ଜୋର୍ କରି ଆପଣଙ୍କଠାରୁ ତା' ଆଦାୟ କରିନେବେ ।

ଅବନୀ—ଶୋଷିତ, ଦଳିତ, ନିଷ୍ପେଷିତ ପ୍ରଭୃତି ବିଦେଶରୁ ଆମଦାନୀ ହୋଇଥିବା କେତେକ ଶବ୍ଦ ଶୁଣେଇ ଗରିବ ମୂର୍ଖଲୋକ-ମାନଙ୍କ ଉପରେ ନେତା ସାଜିବା ଏ ଯୁଗରେ ଗୋଟେ ଫେସନ୍ ହୋଇ ଉଠିଲାଣି । ଆଚ୍ଛା, ତୁଷାର ବାବୁ, ଆପଣ କୁହନ୍ତୁ ।

ଗୋପାଳ—ବେଶ୍ ବେଶ୍ ତୁଷାର ବାବୁ କହନ୍ତୁ । ତାଙ୍କପରି ଜଣେ ଗୁଣୀ ଲୋକଙ୍କୁ ଆପଣମାନେ ଆଜି ଯେଉଁ ଅବସ୍ଥାରେ ରଖିଚନ୍ତି, ସେଇ କୁହନ୍ତୁ ।

ତୁଷାର—ଦେଖନ୍ତୁ, ଏ ଆଲୋଚନାରେ ମୋର କହିବାର କିଛି ନାହିଁ; ଅର୍ଥାତ୍ କହିବାର ଅଧିକାର ମୋର ନାହିଁ ।

ଗୋପାଳ—ଓ, ଆପଣ ହେଉଚନ୍ତି ମିଡ଼ିଲ୍ କ୍ଲାସ୍, ବା ମଧ୍ୟବିତ୍ତ ଶ୍ରେଣୀର ଲୋକ ।

ତୁଷାର—ମୋ ନିଜ କଥା ବାଦ୍ ଦିଅନ୍ତୁ. ମୁଁ ଆଜି କୌଣସି ଶ୍ରେଣୀର ନୁହେଁ । ତଥାପି ମୁଁ ସେହି ହତଭାଗ୍ୟ ମଧ୍ୟବିତ୍ତ ଶ୍ରେଣୀ; ଅର୍ଥାତ୍ ଏ ଦେଶର କିରାନୀ, ଶିକ୍ଷକ, ଓକିଲ, ମୁକ୍ତିଆର, ଡାକ୍ତର ଇତ୍ୟାଦିଙ୍କଠାରୁ ଆରମ୍ଭକରି ଗାଁ

ଗତକଲର ସାଧାରଣ ଗୃହୀ ବ୍ୟବସାୟୀଙ୍କ କଥା କହୁଛୁ । ଦେଶରେ ଆଜ ଏମାନଙ୍କର ସ୍ଥାନ କେଉଁଠି କହିପାରିବେ ? କହିପାରିବେ ନାହିଁ...... । କାରଣ ଏମାନେ ସର୍ବହରା ମଜଦୁରଙ୍କ ପରି ମାଲିକ ମୁଣ୍ଡରେ ଠେଙ୍ଗା ଥୋଇ ସେମାନଙ୍କ ଦାବୀ ହାସଲ କରି ପାରୁ ନାହାନ୍ତି, କିମ୍ବା ଠକା ପୁଞ୍ଜିପତିଙ୍କ ପରି ମୂଲିଆ ମଜଦୁରଙ୍କୁ ଶୋଷଣ କରିବା ବିଦ୍ୟା ଏମାନଙ୍କୁ ଜଣା ନାହିଁ । ଏମାନେ ନିଜର ବୁଦ୍ଧି ଖଟେଇ ଚାହାନ୍ତି ଶାନ୍ତିପୂର୍ଣ୍ଣ ଭଦ୍ର-ଜୀବନ ଯାପନ । କିନ୍ତୁ ଏ ମାଲିକ ମଜଦୁରଙ୍କ ଯୁଗରେ ସେମାନେ ତଳିତଳାନ୍ତ ହେଲେଣି । ସେମାନଙ୍କୁ ରକ୍ଷା କରିବାକୁ କେହି ନାହିଁ ।

ଅରମା—ଦେଖିଲେ ଗୋପାଳବାବୁ, ଶୁଣିଲେ ? ଆଜ ଦୁର୍ଦ୍ଦିନ ତୁମ ବାବୁଙ୍କୁ ସାକ୍ଷୀ ମାନି ଥିଲ ନା. ସେ ଡେଲିଟି ଆମ ଦୁଇ ଶ୍ରେଣୀଙ୍କ ବିରୁଦ୍ଧରେ ସ୍ପର୍ଦ୍ଧା ଆଣିଲେଣି । ତାଙ୍କୁ ଏଥର ସମ୍ଭାଳନ୍ତୁ ।

ତୁଷାର—ସମସ୍ତେ କହୁଚନ୍ତି, ସମସ୍ତେ ମାନୁଚନ୍ତି ଯେ ଏଇ ମଧ୍ୟବିତ୍ତ ଶ୍ରେଣୀ ଅନେକ କଷ୍ଟ ବଳି ଦେଇ ଦେଶକୁ ସ୍ୱାଧୀନ କରିଚନ୍ତି, ଦେଶକୁ ରକ୍ଷା କରୁଚନ୍ତି । ଅତଏବ ସେମାନଙ୍କୁ କୁହା ଯାଉଚି, ଯଥେଷ୍ଟ ସ୍ୱାର୍ଥ ବଳି ଦମେ ଦେଉଚ, ଆଉ କିଛୁ ଦିଅ । ମୂଲିଆ ମଜଦୁରମାନେ ସୁବିଧାରେ ତାଙ୍କ ଦାବୀ ହାସଲ କରନ୍ତୁ । ପୁଞ୍ଜିପତିମାନେ ଆଉ ଟିକେ ପୁଞ୍ଜି ବଢ଼େଇବାର ସୁବିଧା ପାଆନ୍ତୁ । ଏକା ତୁମର ଶ୍ରେଣୀଟା ପେଟରେ ଭୋକ, ମୁହଁରେ ଲାଜ ରକ୍ଷା କରି-ପାରନ୍ତୁ । ଅତଏବ ଦୁଇଟା ଲଢୁଆ ଶ୍ରେଣୀକୁ ସନ୍ତୁଷ୍ଟ

ଦେଖିବା ପାଇଁ, ତାଙ୍କୁ ଉଚ୍ଚପଦରେ ବସାଇ ଦେଇ ହୁଏତ ପାରିବେ—ତାହେ ସବୁ ।

ଗୋପାଳ—ଆପଣ ଜଣେ ଗୁଣ୍ଡାଳି ନାହିଁ ଯେ ଦେଶରେ ଗୋଟେ ଶ୍ରେଣୀହୀନ ସମାଜ ଗଢ଼ାଯାଉ ।

ତୁଷାର—ମୁଁ ନିଜେ ଅନ୍ଧ ବୋଲି ଦେଶର ଗୋଟେ ଅନ୍ଧ ସମାଜ ଗଢ଼ିବାକୁ ଯଦ୍ୟପି ମୁଁ ଗୁହେଁନା; ଆପଣଙ୍କ କଳ୍ପିତ ଶ୍ରେଣୀହୀନ ସମାଜକୁ ମୁଁ ସ୍ୱାଗତ କରୁଛି । ଗଛ ଅଗରୁ କାଟିଲେ ଗଛ ଫଙ୍କାଳିଆ ହେବ—ଗଛ ମୂଳରୁ କାଟିଲେ ନୂଆ ଗଛ ପାଇଁ ଭୂଇଁ ଖାଲି ହେବ, କିନ୍ତୁ ଗଛ ଅଧାରୁ କାଟିଲେ ଖାଲି ଖୁଣ୍ଟା ଗଛ ଛଡ଼ା ଆଉ କିଛି ପାଇବେ କି ? ସେଇଥିପାଇଁ ମୁଁ କହୁଛି—ଶ୍ରେଣୀହୀନ ସମାଜ ଗଢ଼ାହେଉ । କିନ୍ତୁ ଶ୍ରେଣୀହୀନ ନାମରେ ଗୋଟେ ପ୍ରାଣ ହୀନ, ବୁଦ୍ଧି ହୀନ, ବିବେକ ହୀନ, ଓ ମନୁଷ୍ୟତ୍ୱ ହୀନ ସମାଜ ଗଢ଼ା ନ ହେଉ । ( କିଛିକ୍ଷଣ ପାଇଁ ସମସ୍ତେ ନୀରବ—ତୁଷାର ଅସ୍ୱସ୍ତିକର ନୀରବତାକୁ ଅନୁଭବ କରିପାରିଲା )

ତୁଷାର—କ୍ଷମା କରିବେ, ମୁଁ ବୋଧେ ଅନଧିକାର ଚର୍ଚ୍ଚା କରୁଛି—ବାସ୍ତବିକ୍, ମୁଁ ଦୁଃଖିତ । ( ଉଠିଲା )

ଅରୁଣା—ଏ କଣ ତୁଷାର ବାବୁ, ଉଠିଲେ ଯେ— ?

ତୁଷାର—ମୁଁ ଯାଉଛି......

ଅରୁଣା—ବାଃ, ଏତେଦିନ ପରେ ମୋ ଘରକୁ ଆସିଚନ୍ତି ଏତେ ଚଞ୍ଚଳ ଗ୍ଲଲିଯିବେ ? ବସନ୍ତୁ । ଆପଣ ଥିବାରୁ ଆଲୋଚନାଟା ଭଲ ଜମୁଛି । ( ନିଜେ ଉଠିଯାଇ ବସାଇ ଦେଲେ ) ଜାଣନ୍ତି ଗୋପାଳ ବାବୁ ତୁଷାର ବାବୁ ମୋ ପୁଅକୁ ଟିଉସନ୍ କରୁଥିଲେ । ତାପରେ ଏଇଠୁ ଟିଉସନ୍

ସାଵ ଋକ୍‌ସାରେ ଫେରିବା ସମୟରେ ମଟର ଧକ୍‌କା ହେଲା—ତାହା ମଟର ଜାଣନ୍ତି ? ମୋର ଶଳା, ଦୁଷ୍କନ୍ତ ! ସେ ପୁଣି ତୁଷାର ବାବୁଙ୍କ ଅନ୍ତରଙ୍ଗ ବନ୍ଧୁ, ଜାଣନ୍ତି ତ ତାଙ୍କୁ ?

ଗୋପାଳ—ହଁ ଜାଣେ—ଏ ସହରରେ କିଏ ତାଙ୍କୁ ନ ଚହ୍ନେ ?

ଅବନୀ—ତାଙ୍କର ମଟର ଧକ୍‌କା ଫଳରେ ତୁଷାର ବାବୁ ଅନେକ ଧନ ମେଡ଼ିକାଲରେ ପଡ଼ିଲେ । ଆଜି ନିଜ ସନକୁ ଆସିଲେ ନାହିଁ । ( କଥା ଅବସରରେ କଲିଙ୍ଗବେଲ୍ ବଜାଇଲେ, ଶ୍ୟାମ ଆସିଲ ) ଶ୍ୟାମ, ମାଆଙ୍କୁ କହ ରୁମ୍ ଠିକ୍ କରିବେ ।

ଗୋପାଳ—ଏ କଥା ଆପଣ ଅସ୍ୱୀକାର କରି ପାରିବେ ନାହିଁ ତୁଷାର ବାବୁ ଯେ ଏଇ ମଧ୍ୟବିତ୍ତ ଶ୍ରେଣୀକୁ ନେଇ ଗୋଟାଏ "ବାବୁ" ଶ୍ରେଣୀ ଗଢ଼ି ଛନ୍ତି ।

ତୁଷାର—ମାନୁଛି, ବାବୁଆନ ନ ଥାଇବ ଏମାନେ ବାବୁ । କିନ୍ତୁ ଏଇମାନେଇ କେବଳ ବଳ ଆଉ ବୁଦ୍ଧି ଦୁଇଟା ଯନ୍ତ୍ର ଖଟେଇ ଧନକୁ ବାରଦଣ୍ଡା ପରିଶ୍ରମ କରି ଆଣନ୍ତି ।

ଗୋପାଳ—ମୁଁ ନିଜେ ମଧ୍ୟବିତ୍ତ ଶ୍ରେଣୀର ଲୋକ । ମୋର ବାପା ମୁକ୍ତିଆର । କଟକରେ ଘଣ୍ଟେ କୋଠା ଅଛି—ଗାଁରେ ଜମି ଅଛି । କମିଶ କପର ଗାଁରୁ ଗୁଡ଼ିକ ଆସେ, ଆମେ ଜାଣୁନା । ସେଇଥିପାଇଁ ମୁଁ ବାପାଙ୍କୁ କହୁଥିଲି ଯେ— ତେଜ ଗଣି ହଇସା ରୋଜଗାର କରିବା ଆଉ ସମ୍ଭବ ନୁହେଁ । ଏଣିକ ଲଙ୍ଗଳ ଯାର ଜମି ତାର ।

ଅବନୀ—ଆଉ ସେଥିପାଇଁ ବୋଧେ ଆପଣଙ୍କ ବାପା ଆଗରୁ ସାବଧାନ ହୋଇ ପ୍ରାୟ କୋଡ଼ିଏ ଏକର ଜମି ବିକି-ଦେଇଛନ୍ତି ।

ଗୋପାଳ—କଏ କହୁଛି ?

ଅବନୀ—ମୁଁ କହୁଛି ଆଜ୍ଞା—ଲୁଗାକଳ ବସାଇବା ପାଇଁ ଆମର କଂପାନୀ ସେ ଜମି କୋଡ଼ିଏ ହଜାର ଟଂକା ଦେଇ କିଣିଛି । ଆଜ୍ଞ, ଆପଣମାନେ ଏଇ ଯୋଜନା ଲୁଗାକଳ ହାତରୁ ଉଠେଇଲେଣି, ଆମ କଂପାନୀ ଖୁବ୍ ଶସ୍ତା ଓ ସୁବିଧାରେ ଅନ୍ୟତ୍ର ଶହେ ଏକର ଜମି କିଣିବାକୁ ଯାଉଛୁ ।

ଗୋପାଳ—ଛାଡ଼ନ୍ତୁ ସେ କଥା—ଆପଣଙ୍କ ନିଜ କଥା କୁହନ୍ତୁ । କି ନିଷ୍ପତ୍ତି ଆପଣ କରୁଛନ୍ତି ?

ଅବନୀ—ନିଷ୍ପତ୍ତି ଆପଣଙ୍କ ହାତରେ—ଆପଣ ନିଜେ ଆସି ସମସ୍ତ ହିସାବ ଦେଖି ଶ୍ରମିକମାନଙ୍କର ଜଣିତ ପାଉଣା ନେଇ ଯାନ୍ତୁ ।

ଗୋପାଳ—ଆପଣଙ୍କ ହିସାବ ? ଆପଣଙ୍କ ଇନ୍‌କମ୍ ଟ୍ୟାକ୍ସ ପାଇଁ ଗୋଟେ ଖାତା, ସେଲ୍ ଟ୍ୟାକ୍ସ ପାଇଁ ଗୋଟେ ଖାତା, ଶ୍ରମିକମାନଙ୍କ ପାଇଁ ଗୋଟେ ଖାତା ଆଉ ନିଜ ପାଇଁ ଗୋଟେ ଖାତା ! ସେଥିରୁ ଆମକୁ କଣ ମିଳିବ ? ମୋଟଉପରେ ଶ୍ରମିକମାନଙ୍କ ଦାବୀ ପୂରଣ ନ ହେଲେ—

ଅବନୀ—ଦେଖା ! ଏଇଯାଉ, କିନ୍ତୁ ଦେଖାଯାଏ କଥା ଯିବ କାହିଁକି ? କାରଖାନା ବନ୍ଦ ହେଉଛି—ସିମିତ ବନ୍ଦ ରହିବ । ମୋ ନିଜ ପେଟ ପୋଷିବା ପାଇଁ ମୁଁ ଆପଣ-ମାନଙ୍କଠୁଁ ଢେର ବେଶି ପରିଶ୍ରମ କରିପାରିବ । ଏତେ ସାତ ଶହ ମୂଲିଆ ବେକାର ହୋଇ ବିଦେଶ ପଳାଇବେ । ବର୍ତ୍ତମାନତ ପ୍ରାୟ ଛଅଲକ୍ଷ ଓଡ଼ିଆ ବିଦେଶରେ ମୁଣ୍ଡ ଗୁଞ୍ଜି ପଡ଼ିଛନ୍ତି ।

ଗୋପାଳ—ଏ ସବୁ ଅତି ସ୍ଥୂଳ କଥା—କେଉଁ ପ୍ରଦେଶର ଲୋକ କୋଉଠି ରହୁଲେ । କେଉଁ ପ୍ରଦେଶର ସୀମା କେଉଁ ପ୍ରଦେଶ ଭିତରେ ରହିଗଲା, ଏ ସବୁକୁ ନେଇ ମୁଣ୍ଡ ଖେଳେଇବା ଉଚିତ ନୁହେଁ । ସବୁ କଥା ମହାଭାରତୀୟ ଏପରିକି ଅନ୍ତର୍ଜାତୀୟ ଦୃଷ୍ଟି କୋଣରୁ ବିଚାର କରନ୍ତୁ । ବଙ୍ଗାଳି ଜାତିକୁ ଉଦ୍‌ବୋଧନ ଦେଇ, ନିଜେ ବିଶ୍ୱକବି ରବୀନ୍ଦ୍ରନାଥ ତାଙ୍କ "ବଙ୍ଗମାତା" କବିତାରେ କହୁଚନ୍ତି—

"ଦେଶ ଦେଶାନ୍ତର ମାଝେ ଯା'ର ଯେଥା ସ୍ଥାନ୍
ଖୁଁଜିୟା ଲଇତେ ଦାଓ, କରିୟା ସନ୍ଧାନ"

ଅବନୀ—ବାବାହ୍, ଗୋପାଳ ବାବୁ ! ଏତିକି ସୁବିଧା ଆପଣ ଆମକୁ ଦିଅନ୍ତୁ । ମୁଁ ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶରୁ ଯଥେଷ୍ଟ ଶ୍ରମିକ ଆଣି ପାରିବି । ସେମାନେ ଆମ ଓଡ଼ିଆ କୁଲିଙ୍କ ଅପେକ୍ଷା ବେଶି ବେଶି ପରିଶ୍ରମ କରି ପାରନ୍ତି, ଖୁବ୍ କମ୍ ମଜୁରିରେ ଖଟନ୍ତି । କିନ୍ତୁ ବୁଝିଅଛ, ସେତେବେଳେ ଆପଣ ମୋତେ ଅଣ ଓଡ଼ିଆ ପ୍ରୀତିର ଦୋଷ ଦେଇ ପାରିବେନି ।

ଗୋପାଳ—ଆପଣ ମୋ କଥାର ଅର୍ଥ ବୁଝିପାରୁ ନାହାନ୍ତି ।

ଅବନୀ—ଆଗେ ଆପଣ ବୁଝନ୍ତୁ ଅଙ୍କ—ଛଅ ଲକ୍ଷ ଓଡ଼ିଆ ଯାଇ ବିଦେଶରେ କାମ କରୁଚନ୍ତି । ଜଣେ ଲୋକର ପରିଶ୍ରମରୁ ଯଦି ଅନ୍ୟ ପ୍ରଦେଶର ଲୋକେ ଦିନକୁ ଆଠ ଅଣା ଲାଭ ଉଠାନ୍ତି, ତେବେ ଦିନକୁ ଆମ ପ୍ରଦେଶ ତିନିଲକ୍ଷ ଟଙ୍କା ହଜି ଯାଉଛି । ମାସକୁ ନବେଲକ୍ଷ, ବର୍ଷକୁ ଦଶ କୋଟି ଅଶୀ ଲକ୍ଷ—ଧରିବା ଆହୁରି ବେଶି, ବାର କୋଟି କି ପନ୍ଦର କୋଟି । ଆମ ଓଡ଼ିଶା ସରକାରଙ୍କର ଆୟ

କେତେ ଅଛି ? ( ତୁଷାରକାନ୍ତ ତନ୍ମୟ ହୋଇ ଶୁଣୁଥିଲେ । ଗୋପାଳ କଣ କହିବେ ବୋଲି କିଛି କହି ପାରିଲେନି । ଶାମ ଆସିଲା )

ଶାମ—ଚା' ଆଣିବି ?

ଅବନୀ—ହିଁ ଅଣ୍, ମାଆଙ୍କୁ ବି ଡାକି ଦେ । ( ଶାମ ଚାଲିଗଲା )
ଆପଣମାନେ ତ ମର୍କସ-ଏଙ୍ଗେଲ୍‌ଙ୍କ ଛାତ୍ର—ଏ କଥାର କାରଣ ଦେଖନ୍ତୁ । ଓଡ଼ିଶାରେ କଣ ଅଛି ଚାବୁ ? ଆଗେ ଓଡ଼ିଶାକୁ ଇଣ୍ଡଷ୍ଟ୍ରିଆଲାଇଜ୍ କରନ୍ତୁ—ଦେଶରେ ବଡ଼ ବଡ଼ ଶିଳ୍ପ କାରଖାନା ଗଢ଼ି ଉଠୁ ତାପରେ, ଆପଣମାନେ ଶ୍ରମିକମାନଙ୍କ ନେତୃତ୍ୱ ନିଅନ୍ତୁ । ଏଣେ ବନ୍ଧୁଚନ୍ଦ୍ର କାରଖାନା ବସୁ—ତେଣେ ଲୋକଙ୍କୁ ମଶାଉଚନ୍ତି, କାରଖାନା ପାଇଁ ଜମି ଛାଡ଼ନି । ଫଳରେ ଓଡ଼ିଶା ଚିରଦିନ ଇମିତି ମରୁଭୂମି ହୋଇ ପଡ଼ିଥିବ । ଆଉ ଚିରଦିନ ଆପଣଙ୍କର ମାର୍କସ-ଏଙ୍ଗେଲ୍‌ସ ଆଲମିରା ଭିତରେ ଚାପିହୋଇ ରହିଥିବେ । ଛଟଟା ବାହାର ବୁଝନ୍ତୁ । ( ଚା'ଆସିଲା—ହେମାଙ୍ଗିନୀ ଆସିଲେ, ଚା' ସାଥିରେ ବିଭିନ୍ନ ପ୍ରକାରର ଉପାଦେୟ ଖାଦ୍ୟ ) ଆସନ୍ତୁ—ଟିକେ ଚା' ଖିଆ ଯାଉ । ହେମ, ଇଏ ହେଉଚନ୍ତି ଗୋପାଳ ବାବୁ ଶ୍ରମିକ ନେତା । ଆଉ ତୁଷାର ବାବୁଙ୍କୁ ତ ତୁମେ ଜାଣ ।

ହେମ—( ନମସ୍କାରର ଆଦାନ ପ୍ରଦାନ ପରେ ) ଖାଲି ତୁଷାରବାବୁଙ୍କୁ ତ ନୁହେଁ ତାଙ୍କ ସ୍ତ୍ରୀଙ୍କୁ ମଧ୍ୟ ଭଲଭାବରେ ଜାଣେ । ଆମେ ଦୁହେଁ ଏକା ସାଥିରେ ପଢୁଥିଲୁ । ( ନିଜେ ହେମାଙ୍ଗିନୀ ଚା' ପରଶୁ ଥାଆନ୍ତି )

ଅବନୀ—ଆପଣ ତବାହା କରଚନ୍ତି ଗୋପାଳ ବାବୁ ?

ଗୋପାଳ—ନା—

ଅରମା— କେବେ ପୁଣି ବିବାହ ହଉଛି ?

ହେମ—ବିବାହକରିବେ ତ କୁହନ୍ତୁ—ମୁଁ କନ୍ୟା ଠିକ୍ କରିଦେବି ।

ଅରମା—ଭଲ କଥା ହେମ । ତାଙ୍କ ପାଇଁ ତାହାହେଲେ କନ୍ୟା ଠିକ୍ କରିବାକୁ ପଡ଼ିବନି—ସେ ନିଜେ ନିଜେ ତାଙ୍କ ସାଥି ବାଛି ନେବେ ।

ଗୋପାଳ—ସାଥି କୁହନ୍ତୁ, କମ୍ରେଡ୍ କୁହନ୍ତୁ, ବା କନ୍ୟା କୁହନ୍ତୁ ତାହାର ପାଇଁ ବର୍ତ୍ତମାନ ମୁଁ ପ୍ରସ୍ତୁତ ନୁହେଁ— ।

ଅରମା—ଗୋପାଳବାବୁଙ୍କୁ ଆଉ ଦଂଶନ୍ତ ବସ୍ତୁଟି ଦିଅ ହେମ ।

ଗୋପାଳ—ନା-ନା । ତାହେଲେ— !

ଅରମା—ଆପଣ କାଲି ଦୟାକରି ମୋ ଅଫିସ୍‌କୁ ଆସନ୍ତୁ—ସବୁ ହିସାବପତ୍ର ଦେଖିବେ । ଥରେ ଆଲୋଚନା ହେଲ, ଆହୁରି ପାଞ୍ଚଥର ହେବ । ଏପରି ବନ୍ଧୁମନୋଭାବ ନେଇ ଆଗେଇଲେ ସବୁ ସମସ୍ୟା ଦୂରେଇ ଯିବ । ଆଚ୍ଛା ଆପଣ ଯିବେ କେମିତି ? ମୋ ଗାଡ଼ିରେ ଯାଆନ୍ତୁ ।

ଗୋପାଳ—ଗାଡ଼ି କଣ ହେବ—ନିକଟରେ ବାଟ ଯେ, ମୁଁ ଚାଲିଯିବି । ନମସ୍କାର । ( ଚାଲିଗଲେ )

ଅରମା—ତୁଷାର ବାବୁ—

ତୁଷାର—ମୁଁ……( କ'ଣ କହିବାକୁ ଯାଇ କହିପାରୁ ନାହାନ୍ତି )

ଅରମା—ଆପଣ ମୋ ଗାଡ଼ିରେ ଯାଆନ୍ତୁ—

ତୁଷାର—ନାହିଁ ଅଳ୍ପ ଗାଡ଼ି କଣ ହେବ, ମୁଁ……

ଅରମା—ନା ନା—ଆପଣ ଆଉ ଟେକ୍‌ସୀରେ ଯାଇ ପାରିବେ ନାହିଁ—ଶାମ, ଡ୍ରାଇଭର୍‌କୁ କହିଦେ । ତୁଷାରବାବୁଙ୍କୁ

ଛାଡ଼ିଦେଇ ଆସିବ । ( ଭୂଷଣର ବହାଣୁ ନେଲ୍, ଘରେ ଅବନୀ ଓ ହେମ )

ହେମ—ଷ୍ଟ୍ରାଇକ୍ କେବେ ଭାଙ୍ଗିବ ?

ଅବନୀ—ସବୁ ଷ୍ଟ୍ରାଇକ୍ ଭାଙ୍ଗେ—ଇଏବି ଭାଙ୍ଗିବ । କିନ୍ତୁ ହେମ ସହଜ କଥା ନୁହେଁ ଏ ଗୋଖାଳବାବୁ ।

ହେମ—ଠିକ୍ ସେଇ କଥା ସିଏବି ମନେ ମନେ ଭାବି ଯାଉଥିବେ ଯେ, ସହଜ ଲୋକ ନୁହଁନ୍ତି ଏ ଅବନୀ ବାବୁ, ( ଅବନୀ ହସିଲେ ) ଭୂଷଣ ବାବୁ କାହିଁକି ଆସିଥିଲେ ?

ଅବନୀ—ବୋଧେ ପୁଣି କିଛି ସନ୍ ଯୋଗାଡ଼ ପାଇଁ—

ହେମ—କାହିଁ କିଛି କହୁଲେନି ତ—

ଅବନୀ—କହିବାର ସୁଯୋଗ ତାଙ୍କୁ ଦେଲା କିଏ ? ଅରୁଣ ପାଇଁ ନୂଆ ମାଷ୍ଟର ରହୁଚନ୍ତି ଶୁଣି ତାଙ୍କ ମନ ଏକାବେଳକେ ଦବିଗଲା । ସେ ପ୍ରଶ୍ନ ଆଜ ଉଠିଥାନ୍ତା କାହିଁକି ?

ହେମ—ହିଁ, ମୁଁ କିଛି ଆମ ଘରକୁ ଯିବି ।

ଅବନୀ—ମହଶ୍ରୁଦଅ ବଜାରରୁ ଗୋପାଇଙ୍ଗା ଲେନ୍—ଦ' ଦ'ଷ୍ଟା ଗାଡ଼ି ଅଛି । ମୋର ଅନୁମତି ତ କେବେ ଦରକାର ହୁଏନା—ଆଜ ପୁଣି କଣ ?

ହେମ—ଭାଇଙ୍କ ଖବର ରଖୁଚ ?

ଅବନୀ—ତାଙ୍କ ଖବରଟା ଖବରକାଗଜବାଲା ରଖନ୍ତି, ମୁଁ ଅଧିକା କଣ ରଖିବି । ଖବରକାଗଜ ପୃଷ୍ଠା ଓଲଟେଇଲେ ଆଖିରେ ପଡ଼େ—ଓକିଲ ଦୁହ୍ମନ୍ତ ଓକିଲତି ନ କରି ଦରିଦ୍ରନାରାୟଣ ସେବାରେ ମନ ଦେଲେ । ଲକ୍ଷପତି ଦୁଷ୍ମନ୍ତଙ୍କର ହାତ ଖୋଲା ଦାନ—ବଢ଼ି ପାଣିକୁ ପାଞ୍ଚ ହଜାର—ଦେଶ

ମିଶ୍ରଣ ପାଇଁ ପ୍ରଚଣ୍ଡ ହୁଙ୍କାର—ସରଳ ଜୀବନ, ଉଚ୍ଚ ଆଦର୍ଶ। ଏଇ ତ ତାଙ୍କର ଖବର ?

ହେମ—ଅଚ୍ଛା, ସେ କଣ ବିବାହ କରିବେନି ?

ଅବନୀ—ତାଙ୍କର ଚିତ୍ତଶୁଦ୍ଧି ହେଲାଣି କି ନାହିଁ, ଯଦି ଜାଣିବାକୁ ଇଚ୍ଛା, ଜଣେ ଜ୍ୟୋତିଷ ପାଖକୁ ଯାଅ ।

ହେମ—ଭିଣେଇ ହୋଇବ ଏ କଥା ତୁମେ କହୁଛ ? ଏଇ ତୁଷାର ବାବୁଙ୍କ ସ୍ତ୍ରୀ, ପ୍ରଭା--ସ୍ୱର୍ଣ୍ଣପ୍ରଭା। ତାକୁ ତ ତୁମେ ଜାଣ ?

ଅବନୀ—କିନ୍ତୁ ସେ ତ ତୁଷାର ବାବୁଙ୍କ ସ୍ତ୍ରୀ, ତମ ଭାଇଙ୍କ ବିବାହ ସହିତ ତାଙ୍କର ସମ୍ବନ୍ଧ କଣ ?

ହେମ—ସମ୍ବନ୍ଧ ତ ଅଛି । ଏଇ ସ୍ୱର୍ଣ୍ଣପ୍ରଭାକୁ ଦିନେ ଭାଇ ଭଲ ପାଉଥିଲେ। ତାକୁ ଆମ ଘରକୁ ବୋହୂକରି ଆଣିବା ପାଇଁ ବୋଉର ମଧ୍ୟ ଖୁବ୍ ଇଚ୍ଛା ଥିଲା । ବୋଉ ତାକୁ ମୋଠାରୁ ବେଶି ଭଲ ପାଉଥିଲା । ଛୁଟିରେ କଲେଜ ବନ୍ଦ ହେଲେ ସେ ଆସି ଆମଘରେ ରୁହେ । କିନ୍ତୁ ସେ ସମସ୍ତଙ୍କ କଥା ଏଡ଼ି ତା' ନିଜ ଇଚ୍ଛାରେ ତୁଷାରବାବୁଙ୍କୁ ବିବାହ କଲା ।

ଅବନୀ—କାରଣ ସେ ତୁଷାରବାବୁଙ୍କୁ ଭଲ ପାଉଥିଲା, ଏଇଆ ତ ? ଇଏତ ସାଧାରଣ ଗଳ୍ପ ଉପନ୍ୟାସର କଥା ।

ହେମ—କିନ୍ତୁ ତୁଷାର ବାବୁଙ୍କ ମଟର ଧକ୍କା ପରେ ଭାଇଙ୍କ ସହିତ ଅନେକ ଥର ସ୍ୱର୍ଣ୍ଣପ୍ରଭାର ଦେଖା ହୋଇଛି । ଆଜି ମୁଁ ଯାହା ଶୁଣିଛି..........

ଅବନୀ—ସେ ମଧ୍ୟ ସେଇ ଗଳ୍ପ ଉପନ୍ୟାସର କଥା । ହନୁମାନର ସୀତାଙ୍କଠାରେ ମୋହ ଥିଲା । ସେଇଥିପାଇଁ ଆର

ଜନ୍ମରେ ସୀତା ସ୍ୱଧାହୋଇ ଜନ୍ମ ହେଲେବୋଲି, ସେ ଚନ୍ଦ୍ରସେଣା ହୋଇ ଜନ୍ମ ହୋଇଥିଲେ। ଇଏତ, ଏଇ ଜନ୍ମର କଥା।

ହେମ—ହନୁମାନର ଭୁଲ ହୋଇପାରେ, ସୀତାଙ୍କର ଭୁଲ ହେବ କାହିଁକି ?

ଅବନୀ—ସୀତାଙ୍କର କାହିଁକି ଭୁଲ ହେଲା, ସେ କଥା ଯାଇ ସାବିତ୍ରୀଙ୍କୁ ପଚାର। ମୋର କାମ ଅଛି।

( ଫୋନ୍ ଉଠାଇଲେ ବେଳେ ହେମ ତାଙ୍କ ହାତରୁ ଫୋନ୍‌ଟି ଛଡ଼ାଇ ନେଇ ଯଥା ସ୍ଥାନରେ ରଖିଲେ )

ହେମ—କଞ୍ଚା ବୟସରେ ତୁଷାର ବାବୁଙ୍କ ପ୍ରତି ଯଣପ୍ରଭାର ଯେଉଁ ପ୍ରେମ ଉଚ୍ଛୁଳା ଥିଲା, ଆଜ ତା ଶୁଖି ଯାଇଛି। କାରଣ ତୁଷାର ଆଜ ଅନ୍ଧ, ଅସୁନ୍ଦର, ଅଯୋଗ୍ୟ। ସେଇଥି ପାଇଁ ପ୍ରଭା ଆଜ ଭାଇଙ୍କ ଆଡ଼କୁ ଟଳିଚି।

ଅବନୀ—ହେମ, ପ୍ରଭା ତମର ବନ୍ଧୁ ........... !

ହେମ—ତମେ ଜାଣିନ ଟଗୋ, ତୁମ ସମ୍ମତ ବିବାହ ପରେ ପରେ ଛଳେଇ କରି ମୋତେ କହିଲା, "ଲକ୍ଷ ଏତ ଅବନୀ ବାବୁଙ୍କୁ ବିବାହ କରିବୁ। ତୋର ଆଜ ଦୁଃଖ କ'ଣ, ତୋ ଜନ୍ମ ସାର୍ଥକ"।

ଅବନୀ—ବୁଝିଲି, ତମେ ମୋର ଦ୍ୱିତୀୟ ପକ୍ଷ ସ୍ତ୍ରୀ ! କିନ୍ତୁ ହେମ— ତମେ କ'ଣ...... ?

( ହେମ ଅବନୀବାବୁଙ୍କ ଛାତିକୁ ଆଉଜା ପଡ଼ିଲେ )

ହେମ—ମୁଁ ତା' ଭଳି ବୋକା ନୁହେଁ ଯେ ତା' କଥାରେ ଛଳ କରନ୍ତି। ବିଜୟପୁର ଜମିଦାର ପରଶୁରାମ ଚକ୍ରଧରଙ୍କ ଝିଅ ସେ। ବୟସର ମୋହରେ ଭୁଲ ସେ ଅଜ କ'ଣ ଦାନା

ଯୋଗାଡ଼ କରିଯାଇଛନ୍ତି । ମୁଁ ଲକ୍ଷପତି ବାପର ଝିଅ, ଲକ୍ଷପତି ସ୍ୱାମୀର ହାତ ଧରିଛି । ଜଣେ ଭାଗ୍ୟବତୀ ସ୍ତ୍ରୀର ଯାହା କାମ୍ୟ, ସେ ସବୁ ମୁଁ ପାଇଛି । ମୋର ଦୁଃଖ କ'ଣ ? ଆମେ ଏକା ସମୟର, ଏକା ବୟସର ଦୁଇ ବନ୍ଧୁ ଥିଲୁ । ମୋ ଭାଗ୍ୟ ନେଇ ମୁଁ ଅଛି—ତା ଭାଗ୍ୟ ନେଇ ସେ ରହୁ । ତା ଭାଗ୍ୟରେ ସୁଖ ନାହିଁ ବୋଲି ଭାଇଙ୍କ ଜୀବନ ସେ ନଷ୍ଟ କରିଦେବ ? ଯା' ମୁଁ କେବେ କରାଇ ଦେବି ନା······କେବେ କରାଇ ଦେବି ନା······

(ହେମ ଚାଲିଗଲା । ଅବନୀ ବାବୁଙ୍କ ମୁହଁରେ ହସ)

—ପରଦା—

## ଚତୁର୍ଥ ଦୃଶ୍ୟ

( ତୁଷାର କାନ୍ତିଙ୍କ ବାସ ଗୃହର ଅଳନ୍ଦ—ପୂର୍ବବର୍ତ୍ତୀ ଦୃଶ୍ୟର ପର ସମୟର ଘଟଣା )

ପ୍ରଭା—(ବାହାରୁ) ମୀର, ମୀର ।

ମୀର—(ପ୍ରବେଶକରି ବାହାରକୁ ଚାହିଁ) କିଏ ? ନୂଆବୋଉ—ଆପ ସଞ୍ଜ ହେଲାଣି ଏତେବେଳଯାଏ କେଉଁଠି ଥିଲ ?

ପ୍ରଭା—(ପ୍ରବେଶକରି) ତମ ଭାଇ କାହାନ୍ତି ମୀର ?

ମୀର—ତମେ ଯିବା ସଙ୍ଗେ ସଙ୍ଗେ ସେ ଭାଇ ଯାଇଛନ୍ତି ।

ପ୍ରଭା—କୁଆଡ଼େ ?

ମୀର—ଚହୁଲେ ତ ଅବନୀ ବାବୁଙ୍କ ଘରକୁ । ଏତେବେଳ ଯାଏ କୁଆଡ଼େ ଗଲେ ?

ପ୍ରଭା—ଜମିତ ଜାଣିବୁ ?

ବି.ବାବୁ—(ବାହାରୁ) ବସ୍ତା କେଉଁଠି ରଖିବ ମା ?

ପ୍ରଭା—ସେଇ ବାରଣ୍ଡାରେ ରଖ ।

ମୀର—କ'ଣ ନୂଆ ବୋଝ, କି ବସ୍ତା ?

ପ୍ରଭା—ଚାଉଳ ବସ୍ତା ।

ମୀର—କାହାର ?

ପ୍ରଭା—ଆମର ।

ମୀର—ତମେ ଆଣିଛ ?

ପ୍ରଭା—ହଁ, ଚାଉଳ, ଡାଲି ଆଉ ସବୁ ସଉଦା ।

ମୀର—ସବୁ ଆମର ?

ପ୍ରଭା—ଆଉ କାହାର ଆଣନ୍ତି ? ସେ ଏବେ ଗଲେ କୁଆଡ଼େ ?
(ମଟର ହର୍ଣ୍ଣ ଶୁଭିଲା)

ମୀର—ଏଇ ଆସିଲେ ନା କ'ଣ—

ପ୍ରଭା—କାହାର ଗାଡ଼ି ଏଇଟା···ଦେଖିଲ ମୀର ?

(ମୀର ଚାଲିଗଲା—କ୍ଷଣପ୍ରଭା ସେଇ ଆଡ଼କୁ ଚାହିଁ ରହିଥାଏ । ଟିକକ ପରେ ମୀରର ହାତଧରି ତୁଷାର ଆସିଲା)

ପ୍ରଭା—ଏତେ ଡେରି କାହିଁକି ହେଲା ? (ମୀର ଚାଲିଗଲା)

ତୁଷାର—ତୁମେ କେତେବେଳେ ଆସିଲ ପ୍ରଭା ?

ପ୍ରଭା—ଏଇନା ଆସୁଛି । ତମର ଏତେ ଡେରି କାହିଁକି ହେଲା ?

ତୁଷାର—ଡେରି ଆଉ କଣ ?

ପ୍ରଭା—ଅବନୀବାବୁଙ୍କ ଘରକୁ ଯାଇଥିଲ ?

ତୁଷାର—ହଁ ।

ପ୍ରଭା—କାହିଁକି ?

ତୁଷାର—ବାସ୍ତବିକ୍ ପ୍ରଭା, ମୋ ଆଖି ଢ'ଠା ଯିବା ସଙ୍ଗେ ସଙ୍ଗେ ମୋ ବୁଦ୍ଧି ମଧ୍ୟ ଲୋପ ପାଉଛି । ଚିନ୍ତନ ଗୁଡ଼ାକ

ପ୍ରାୟ ଛଅମାସ ପରେ, କ ଅଶା ନେଇ ଯେ ସେଠାକୁ ଯାଇଥିଲି, ମୁଁ ନକେ ବୁଝି ପାରୁନ ।

ପ୍ରଭା—ତାଙ୍କୁ ଏତେ ମନାକଲି, ତଥାପି ସେ.........

ତୁଷାର—ଯାଇ କଷ୍ଟ ଯେତ ହୋଇନ ପ୍ରଭା, ଯିବା ଆସିବା ପାଇଁ ଯାଇଯାଇଛିଏ ତ ଖର୍ଚ୍ଚ ହୋଇନ, ଖାଇବାକୁତ ମିଳନ୍ତୁ । ହଁ, ଜୋଡ଼ା ସାବଙ୍କମାନ ସ୍କୁଲରେ ତମର ସ୍ତୁକଷ ନ ହେବା ଖବର ମୁଁ ଶୁଣି ଅସିଲି ।

ପ୍ରଭା—କିପିତ ଶୁଣିଲ, କଏ ଭାଗ୍ୟ ?

ତୁଷାର—ବାଟରେ ଦୁଷ୍ମନ୍ତ ସହିତ ଭେଟ ହେଲା, ତାର ମୁହଁରୁ ଶୁଣିଲି ।

ପ୍ରଭା—ଓ ! ! !

ତୁଷାର—ତମେ, ଆଉଜଣେ କଏ ସୁନନ୍ଦା ଦେବୀ, ଏଇ ଦୁଇଜଣ ପ୍ରାର୍ଥୀ ଥିଲ ?

ପ୍ରଭା—ହଁ ।

ତୁଷାର—ସୁନନ୍ଦା ଦେବୀ ସ୍ତୁକଷ ପାଇଲେ, ତୁମେ ପାଇଲ ନାହିଁ । ଅଥଚ ସମ୍ପାଦକ ଚାହୁଁଥିଲେ ତୁମ ଦୁହିଁଙ୍କୁ ରଖିବାକୁ ।

ପ୍ରଭା—ଜାଣେ ।

ତୁଷାର—କନୁ ନ ରଖିଲେ ତାହିଁକ ଜାଣ ?

ପ୍ରଭା—ତାଇଁକ ?

ତୁଷାର—ତୁମ ସମ୍ବନ୍ଧରେ ସଂପାଦକ ଦୁଷନ୍ତର ମତ ନେଉଥିଲେ । ଦୁଷ୍ମନ୍ତ ହଁ, ନାହିଁ କିଛି କହିଲା ନାହିଁ ।

ପ୍ରଭା—ଏତେ କଥା ମୁଁ ଜାଣେନା । ସଂପାଦକ ମୋ ପାଇଁ ଦୁଷ୍ମନ୍ତ ବାବୁଙ୍କୁ ସୁପାରିଶ୍ କରିବାକୁ ଚାହିଁଥିଲେ ମୁଁ ନାଜେ ନାହିଁ

ଚଉଠଦେଇ ସ୍କୁଲ ଆସିଲି । କାରଣ ମୁଁ ତାହାର ଦସ୍ତୁର
ପାଖ ହେବାକୁ ଯାଇ ନ ଥିଲି ।

ତୁଷାର—ଦୁଷ୍ମନ୍ତ ଝଙ୍କା ଦଉଚି । ତା'ର ମତ ଲୋଡ଼ବା କ'ଣ······

ପ୍ରଭା—ସେଇଠି ମୋର ଭୁଲ । ଛଅମାସ ପରେ ଅବନୀ ବାବୁଙ୍କ
ଘରକୁ ଯିବା ଯେପରି ତମର ଭୁଲ, ଦୁଷ୍ମନ୍ତବାବୁ ସ୍କୁଲର
ଚିଠି ଜାଣି ସେଠାକୁ ଉମାବ ଯିବା ସେଇପରି ଭୁଲ ।

ତୁଷାର—ସେଇ କଥା ପ୍ରଭା, ପାଦେ ପାଦେ ଆମକୁ ଭୁଲ୍ ଲାଗି
ବସିଛି । ମୁଁ ଅଂଧ, ଅକ୍ଷମ—ତମେ କରୁଣ ଘରର ବୋହୂ,
ସୁନ୍ଦରୀ, ଯୁବତୀ—ଭୁଲ୍ ଆମକୁ ହାତଠାରି ଡାକୁଛି ।
ଆମେ ଭୁଲ୍ ନ କରିବା କିମିତି ? ଆମେଇ ଭୁଲ
କରିବା—

( କହୁ କହୁ ଅଣ୍ଡାଳି ଅଣ୍ଡାଳି ଗୃହଗଲେ । ଯଣପ୍ରଭା ସ୍ତବ୍ଧ ହୋଇ
ଠିଆ ହୋଇଥାଏ, ମୀର ଆସିଲା )

ମୀର—ନୂଆବୋଉ !

ପ୍ରଭା,—ଚୁଲ ମୀର, ଜିନଷ ସବୁ ଭିତର ଘରକୁ ଉଠାଇ ନବା !

ମୀର—ନୂଆବୋଉ, ତମ କାନ କ'ଣ ଖାଲି ? ଦୁଲ୍ କ'ଣ
ହେଲା ? (ପ୍ରଭା ହସିଲା) କୁହ, ଦୁଲ୍ କ'ଣ କଲ ?

ପ୍ରଭା—ବଣିଆ ଦୋକାନରେ ଦେଇ ଆସିଲି ।

ମୀର—ଦୁଲ୍ ଖଣ୍ଡକ ତମେ ସଉଦା ଅଣିଚ ? କାହିଁକି ନୂଆବୋଉ
ଏ ଭୁଲ କଲ କାହିଁକି ?

ପ୍ରଭା—ଭୁଲ ତ ଆମ ବାଟରୁହିଁ ବସିଛି । ଭୁଲ ନ କର ମୁଁ ସିଝି
କୁଆଡ଼େ ! ପେଟକୁ ଦାନା ମୁଠାଏ ଜୁଟିବ କିମିତି ?

ମୀର—ଗୋଟି ଗୋଟି ହୋଇ ତମର ସବୁତକ ଗହଣା ଗଲା ।
ଆଉ ରହିଲା କଣ ?

ପ୍ରଭା—(ସ୍ନେହରେ ତାରକୁ ଆଲିଙ୍ଗନ କରି) ଯାହା କହୁଛ ତାହାହିଁ ଠିକ୍ । କହୁତ ତମେମାନେ ଆଜ ମୋର ଦରକାର କ'ଣ ?

—ପରଦା—

## ପଞ୍ଚମ ଦୃଶ୍ୟ

( ଦୁଷ୍ମନ୍ତର ବାସଭବନର ଏକ ବଡ଼ କୋଠରୀ । ସେଦିନ ଏକ ବନ୍ଧୁ ମିଳନର ଆୟୋଜନ ହୋଇଛି । ଉପସ୍ଥିତ ଅଛନ୍ତି ଦୁଷ୍ମନ୍ତ, ତୁଷାର, ଗୋପାଳବାବୁ, ଅବଳାବାବୁ । ଏମାନଙ୍କ ଛଡ଼ା ଆନନ୍ଦ ମୂର୍ତ୍ତି, ରଙ୍ଗଲାଲ, ଚଣ୍ଡୀଲାଲ ବର୍ଦ୍ଧନ ପ୍ରଭୃତି ବ୍ୟବସାୟୀମାନେ ଅଛନ୍ତି । ଆଲୋଚନା ଚାଲିଥିବା ବେଳେ ପରଦା ଉଠିଲା । )

ଗୋପାଳ—କ'ଣ ହେଲା ? ଆଉ କ'ଣ ହେବ ? ସବୁ ଖବର କାଗଜରେ ଏତେ ବଡ଼ ବଡ଼ ଅକ୍ଷରରେ ବାହାରିଲା— "ଦୁଷ୍ମନ୍ତବାବୁ ତାଙ୍କ ସଂପତ୍ତିରୁ ଅର୍ଦ୍ଧେ, ପ୍ରାୟ ଅଢ଼େଇଲକ୍ଷ ଟଙ୍କାର ସମ୍ପତ୍ତି ଅନ୍ଧ, ବଧିର, ଅପାରଗ, ଅକ୍ଷମ ମଣିଷ ଓ ଅନାଥ ଶିଶୁଙ୍କ ସେବାପାଇଁ ଦାନ କରିଅଛନ୍ତି । କିନ୍ତୁ ଏତେ ବଡ଼ କାମ ପାଇଁ ଏ ଟଙ୍କା ଯଥେଷ୍ଟ ନୁହେଁ । ଦେଶର ବଦାନ୍ୟ ବ୍ୟକ୍ତିମାନେ ଏଥିପାଇଁ ଆଗେଇ ଆସନ୍ତୁ—।" କିନ୍ତୁ କାହିଁ ? କେହିତ ଆଗେଇ ଆସିଲେ ନାହିଁ । ଆଖି ଆଗରେ ଅଢ଼େଇ ଲକ୍ଷ ଟଙ୍କା ଦାନର ଆଦର୍ଶ ଦେଖି ସୁଦ୍ଧା, ଅଢ଼େଇ ପଇସା ତ କେହି ଦାନ କଲେ ନାହିଁ । ବର୍ତ୍ତମାନ ଦୁଷ୍ମନ୍ତ ବାବୁ ଆପଣ କୁହନ୍ତୁ ? ଏହା' ପରେ କ'ଣ କରିବି ?

ଦୁଷ୍ମନ୍ତ—ଚନ୍ଦାବାର ଓ ଅନୁରୋଧର କିଛି ନାହିଁ ! ଖବରକାଗଜ ନିବେଦନର ଓ ଫଳ କିଛି ନାହିଁ । ସେଥିପାଇଁ ମୁଁ ମୋର ବିଶିଷ୍ଟ ବନ୍ଧୁମାନଙ୍କୁ ଏଠିକି ଡାକିଛି । ଆପଣମାନେ କୁହନ୍ତୁ, ବର୍ତ୍ତମାନ କ'ଣ କରାଯାଇ ପାରେ ।

( କିଛିକ୍ଷଣ ପାଇଁ ସମସ୍ତେ ନୀରବ )

ଗୋପାଳ—ଆପଣମାନେ ବୋଧେ କେହି କିଛି ବାଟ ଖୋଜି ପାଉ ନାହାନ୍ତି । ମୁଁ ଗୋଟେ ବାଟ ବତେଇବି !

ଅବନୀ—କ'ଣ ?

ରଂଗଲାଲ—ହଁ, ବତ୍ଲାଇଏ—

ଗୋପାଳ—ଠେଙ୍ଗା ?

ଜଲାଲ<br>ରଙ୍ଗଲାଲ } —ଠେଙ୍ଗା, ଏ କ୍ୟା ବାତ୍ ?

ଗୋପାଳ—ଠେଙ୍ଗା ଛଡ଼ା ଆଉ ବାଟ୍ ନାହିଁ । ସରକାର ଓ ଏ ଦିଗରେ କିଛି କଲେ ନାହିଁ । ଆପଣମାନେ ବଡ଼ ଲୋକ, ଲକ୍ଷପତି । ହାତ ପତେଇ ମାଗିଲେ ଆପଣମାନେ ଦେଲେ ନି । ଅତଏବ ଠେଙ୍ଗା ଚଳେଇ ଯେତେ ବଳକା ଧନ ଅଛି ତାକୁ ଜବର ଦସ୍ତି ଟାଣି ଅଣାଯାଉ—ନହେତ୍, ଏ ପାଖରେ ଠେଙ୍ଗା ଚଳେଇ ଯେତେ ଅକ୍ଷମ, ଅପାରଗ, ଦୁଃଖୀ, ଉପାସୀ ଅଛନ୍ତି—ସମସ୍ତଙ୍କୁ ମାରି ଶୁଆଇ ଦିଆଯାଉ । ମୋଟ ଉପରେ ଠେଙ୍ଗାହିଁ ଏକମାତ୍ର ପନ୍ଥା ।

ରଙ୍ଗଲାଲ—ଦୁଷ୍ମନ୍ତବାବୁ, ଆପଣଙ୍କର ବି କ'ଣ ଏଇ ରାୟ ?

ଦୁଷ୍ମନ୍ତ—ଦେଖନ୍ତୁ, ବ୍ୟକ୍ତିଗତ ଭାବେ ମୁଁ ହିଂସାର ପକ୍ଷପାତୀ ନୁହେଁ, କି ଗୋପାଳବାବୁଙ୍କ ଧର୍ମ ମୁଁ ଗ୍ରହଣ କରିବାକୁ ଚାହେଁନା । ମୁଁ ଚାହେଁ ଗଠନମୂଳକ କାମ । ଶାନ୍ତିପୂର୍ଣ୍ଣ

ଭାବରେ ଏହା ଯେପରି ଭାବରେ ହୋଇପାରିବ, ସେଇ ବ୍ୟବସ୍ଥା ହେବା ଉଚିତ ।

ରଙ୍ଗଲାଲ—ସାମ୍ ଭଲ୍ଲ କରେ ଅଚ୍ଛି । ସବ୍ କାମ୍ ଶାନ୍ତିପୂରକ୍ ଭାବରେ ହୋନା ଚାହିଏ । କେହିଁଜୀ ଖାଁ ସାହେବ ଠିକ୍ ହେ ନା ?

ଜଲଲ—ବିଲ୍ କୁଲ୍ ଠିକ୍ ହେ ।

ଅବମା—ତୁଷାର ବାବୁ, ଆପଣ କ'ଣ କହୁଚନ୍ତି ?

ତୁଷାର—ଯେଉଁ ହତଭାଗ୍ୟମାନଙ୍କ ପାଇଁ ଏ ବ୍ୟବସ୍ଥା ହଉଛି, ମୁଁ ସେମାନଙ୍କ ମଧ୍ୟରୁ ଜଣେ । ମୋ କଥାର ମୂଲ୍ୟ..............

ଅବମା—ଆପଣଙ୍କ କଥାର ମୂଲ୍ୟ ସବୁଠୁ ବେଶି । କାରଣ ଦୁଷ୍ମନ୍ତବାବୁ ତାଙ୍କ ସଂପତ୍ତି ଆପଣଙ୍କ ମାରଫତରେ ଦାନ କରିଚନ୍ତି । ଔଷଧାଳୟର ସମସ୍ତ ଭାର ଆପଣହିଁ ନେବେ । ଅତଏବ ଆପଣଙ୍କ ମତ କଣ କୁହନ୍ତୁ ?

ତୁଷାର—ମୁଁ କେବେ କହୁବ ଯେ, ଗୋପାଳବାବୁଙ୍କ କଥାକୁ ହସି ଉଡ଼ାଇ ଦେଇ ହେବ ନାହିଁ । ଆଜି ଦୁନିଆଁର ପ୍ରତ୍ୟେକ କୋଣରେ, ଆକାଶରେ, ପବନରେ, ଧ୍ୱଂସର ବାତ୍ୟା ଖେଳି ବୁଲୁଛି । ଜଗତର ମଙ୍ଗଳ ପାଇଁ ଗୋପାଳବାବୁ ଚାହାନ୍ତି ଧ୍ୱଂସ । କଥାଟା ଅବଶ୍ୟ ଆମକୁ ଅଡୁଆ ଲାଗୁଛି । କିନ୍ତୁ ଧ୍ୱଂସକୁ ରୋକିବ କିଏ ? ରୋକିବେ ଆପଣମାନେ । ମୁଁ ଅନ୍ଧ ବୋଲି, ଅକ୍ଷମ ବୋଲି, ଆପଣ ଦୟା କଲେ ଚଳିବ ନାହିଁ । ଆପଣମାନଙ୍କର ଏଥିପ୍ରତି କର୍ତ୍ତବ୍ୟ ଅଛି । ମୋର ବନ୍ଧୁ ଦୁଷ୍ମନ୍ତ ପରି ଆପଣମାନଙ୍କ

ମନରେ କର୍ତ୍ତବ୍ୟର ଧାରଣା ଆସୁ, ମନ ବଦଳି ଯାଉ, ତେଣିକି ସବୁ ବାଟ ଫିଟି ଯିବ ।

ରଂଗଲାଲ—ତୋ ବତଲାଇଏ, ହମ କୋ କ୍ୟା କରନା ହୈ ?

ଅବମା—ହୁଣ୍ଟର ବାବୁଙ୍କ ପ୍ଲାନ ଅନୁସାରେ ଅରକ୍ଷଣବାସ ପାଇଁ ଅନ୍ତତଃ ପାଞ୍ଚ ଲକ୍ଷ ଟଙ୍କା ଦରକାର । ସେଠ ଅଢ଼େଇଲକ୍ଷ ଟଙ୍କା ଦେଇଚନ୍ତି । ବାକି ଅଢ଼େଇ ଲକ୍ଷ..........।

ଗୋପାଳ—ବାକି ଅଢ଼େଇ ଲକ୍ଷରୁ ଶେଟ୍‌ଜୀ ଆପଣ କେତେ ଦେବେ କୁହନ୍ତୁ ?

ରଂଗଲାଲ—ଆପଣମାନେ ତ ଜାଣିଥିବେ— ମୁଁ ଗୋଟେ ଧରମଶାଳା ବନାଉଚି । ଅବତକ୍ ଏକ ଲାଖ୍ ରୁପେୟା ଖରଚ ହୋଇଗଲାଣି ।

ଗୋପାଳ—ତାହେଲେ ଆପଣ ଗୋଟେ କାମ କରନ୍ତୁ । ସେଇ ଧରମଶାଳାକୁ ଅରକ୍ଷଣବାସ ପାଇଁ ଛାଡ଼ି ଦିଅନ୍ତୁ ।

ରଂଗଲାଲ—ରାମ, ରାମ, ଏ ପାପ ହୈ । ଧରମଶାଲା କରନା ପବିତର୍ ।

ଗୋପାଳ—ହଁ, ପବିତ୍ର ନୁହେଁ ଆଉ କଣ । ଦୁନିଆଁ ପାଖର ଯେତେ ଏଜେଣ୍ଟ, ତୀର୍ଥଯାତ୍ରୀ ଆସି ସେଠି ରହୁଥିବେ । କଏ ଚୋରଠୁ ଝିଅ ବୋହୂ ଶିଖେଇ ଆଣିଲା ତ, ସେଇଠି ଆସି ରହିବ । ପବିତ୍ର ସ୍ଥାନ ନୁହେଁ ଆଉ କ'ଣ ? କୁହନ୍ତୁ, ଆପଣ କେତେ ଦେବେ ?

ରଂଗଲାଲ—ଢା'ଇ ଲାଖ୍ ରୁପେୟା କୋଇ ବଡ଼ା ବାତ ନୈହିଁ । ଲେକିନ୍ ଆପଣମାନେ ଆମକୁ କ'ଣ ରଖିବ ? ସରକାର ତ ଟିକସ ପରେ ଟିକସ ଲଦୁଚନ୍ତି । ଆପଣମାନେ

ଇମିତ ଖେଲ୍ ଲଗେଇଚ ଯେ, ହବ୍‌ବାଦ୍ ସବ ଷ୍ଟ୍ରାଇକ, ହରଦମ୍ ଷ୍ଟ୍ରାଇକ୍ ।

ଗୋପାଳ—ତେବେ କୁହନ୍ତୁ କ'ଣ ଦେବେ ?

ରଙ୍ଗଲାଲ—ଦିଓ୍ୱାଲିକ ଆଜ୍ ଥୋଡ଼ା ଦିନ୍ ଅଛି । ଦିଓ୍ୱାଲିକା ବାଦ୍, ବୁଝିଲେ ଦୁଷ୍ମନ୍ତ ବାବୁ, ଦିଓ୍ୱାଲିକା ବାଦ୍ ମୋର ଯାହା ଦବାର ମୁଁ ଦେବ । ବାସ୍ । ............ହାଁ, ଦୁଷ୍ମନ୍ତବାବୁ, ଆପଣଙ୍କର ସାଦୀ କବ୍ ହଉଚି ?

ଗୋପାଳ—ଖାଲି ସାଦୀର ତାରିଖ ବୁଝିବେ ନା ଲଗାଇ ଢାଲ୍‌ଭାଣ୍ଡା ନେଇଯିବେ ! ପାଦେ—ପାଦେକେ ଆପଣଙ୍କର ବ୍ୟବସାୟ !

ରଙ୍ଗଲାଲ—ଅଜବ୍ ଆଦ୍ମି ଆପନ ଗୋପାଳବାବୁ ।

ଅବନୀ—ରଙ୍ଗଲାଲ ଜଢିନ୍ ସାହେବ ?

ରଙ୍ଗଲାଲ—ମେଁ ତୋ ଖୋଦାକା ଖିଦ୍‌ମଦ୍‌ଗାର୍ ! ଯେ' କାମ ବଡ଼ା ଭଲ କାମ । ଖୁଦା ମୁଁ ଜରୁର୍ ଦେବ । ଲେକିନ୍ ......

ଗୋପାଳ—ଆଜି ଲେକିନ୍ କ'ଣ ?

ରଙ୍ଗଲାଲ—ମୋର ତ ଚମଡ଼ା କାରବାର । ସାରା ଦେଶରେ ଆଜ ହଲ୍ଲା ଉଠିଛି, ଗୋହତ୍ୟା ବନ୍ଦ କରେ । ମୋର କାରବାରରେ ଘାଟା ପଡ଼ୁଛି । ତେବେ ଆର ମାସ ଏଗାର ତାରିଖରେ ଇନ୍‌କମ୍ ଟିକସ୍‌ଟା ଫଏସଲା ହେଇ ଯାଉ— ମୁଁ ଯାହା ଦବାର କଥା ଦେଉଛି ।

ଗୋପାଳ—ତୁଷାରବାବୁ ନୋଟ୍ କରନ୍ତୁ—ଯ୍ୟାଙ୍କର ଦିଓ୍ୱାଲି ପରେ—ତାଙ୍କର ଇନ୍‌କମ୍ ଟିକସ୍ ଫଏସଲା ପରେ— ଆଜ୍ଞ ପୁଣି ମହାଶୟ, ଆପଣ ?

ପୁଣି—ମୁଁ ଭାଇଙ୍କ ସହିତ ପରାମର୍ଶ କରି ଆପଣଙ୍କୁ ଜଣାଇବି ।

ଗୋପାଳ—( ଅବନୀ ବାବୁଙ୍କୁ ) ଏଥର ଆପଣ ନିଜ କଥା କୁହନ୍ତୁ ?

ଅବନୀ—ଏ ସମ୍ବନ୍ଧରେ ବିଚାର କରିବାକୁ କିଛିଦିନ ସମୟ ମୁଁ ଚାହୁଁଛି । ମୁଁ ପ୍ରତିଜ୍ଞା କରିଛି, ଦେଶକୁ ଇଣ୍ଡଷ୍ଟ୍ରିଆଲାଇଜ୍ କରିବି ବୋଲି । ସେଇଟା ମୋର ପ୍ରଥମ କର୍ତ୍ତବ୍ୟ । ତଥାପି ମୋର ଯାହା ଦେବାର ମୁଁ ଦେବି ।

ଗୋପାଳ—ବୁଝିଲେ ଦୁଷ୍ମନ୍ତବାବୁ, ମୁଁ ଯାହା କହୁଥିଲି—ଯୁଗ ଯୁଗ ଧରି ଏ ସମାଜକୁ ଶୋଷଣ କରି ଯେଉଁମାନେ ପୁଞ୍ଜି ବଢ଼େଇଚନ୍ତି—ଠେଙ୍ଗା ନ ଧରିଲେ ସେମାନେ ବାଟକୁ ଆସିବେ ନାହିଁ ।

ଅବନୀ—ଆପଣଙ୍କର ଏ କଥାର କିଛି ମୂଲ୍ୟ ନାହିଁ । ଆଗେ କାମ ଆରମ୍ଭ ହେଉ, ଦେଖିବେ, ଟଙ୍କାର ଅଭାବ ରହିବ ନାହିଁ ।

ଗୋପାଳ—ମୋଟେ ନୁହେଁ, ମୋଟେ ନୁହେଁ, ଠେଙ୍ଗା ନ ଖେଳିଲେ ଟଙ୍କା ମିଳିବ ନାହିଁ ।

ଜଙ୍ଗଲ—କ୍ୟା ଆପ୍ ଠେଙ୍ଗା ଠେଙ୍ଗା ହୋତେ ହେଁ । ଆମକୁଛ ଠେଙ୍ଗା ଧରି ଆସେ—

ଗୋପାଳ—ବେଶ୍ ଆସନ୍ତୁ--ଧରନ୍ତୁ ଠେଙ୍ଗା—ଦେଖାଯାଉ, କାହା ଠେଙ୍ଗାର ଜୋର କେତେ ?

ରଂଗଲାଲ—ଏ କ୍ୟା ବାତ୍ ହେ—ଏ କ୍ୟା ବାତ୍ ହେ । ଠେଙ୍ଗା ସେ କଭି କୁଛ୍ ଫଇସଲା ହେବନ । ଅବନୀ ବାବୁ, ଯାହା କହୁଲେ—ଓହିସେ କାମ୍ ଶୁରୁ ହୋନେଦୋ—କେତନା ରୁପେୟା ଲଗେଗା, ଦେଖା ଯାଏଗା । ଲେକିନ୍ ଶାନ୍ତି ସେ ବାତ୍ କରୋ—ଲଢ଼େଇ ସେ ଫାଇଦା କ୍ୟା ?

ଗୋପାଳ—ଲଢ଼େଇରେ ଫାଇଦା ଅଛି ସେଠ୍ ସାହେବ । ଆପଣ

ନଜେ ଲଢ଼ିବାକୁ ଡରୁଛନ୍ତ—ବଂଚୁ ମନେ ମନେ ହନୁମାନ୍‌ଜୀଙ୍କୁ ଡାକୁଚନ୍ତ । କମିଟି, ଟୃଷ୍ଟୀସ୍ ବିଶୃଙ୍ଖଳ ଅବସ୍ଥ ହୋଇଯାଉ । ଅପଣ ଘରେ ବସ୍ ପୁଞ୍ଜି ବଢ଼େଇ ବସିଥିବେ ।

ଅବମା—ଏ ସବୁ କଥା ଛାଡ଼ନ୍ତୁ ଗୋପାଳବାବୁ ! ମୋଟ ଉପରେ ଅବକ୍ଷଳିବାଙ୍କୁ ସାହାଯ୍ୟ କରିବା ପାଇଁ ସମସ୍ତେ ରାଜି । ତେବେ କଏ କେତେ ଦେବେ—ସେ କଥା ପନ୍ଦର ଦିନ ମଧ୍ୟରେ ସମସ୍ତେ ଦୁଷ୍ମନ୍ତ ବାବୁଙ୍କୁ ଜଣେଇ ଦେବେ, ନା କଣ କହୁଛନ୍ତ—ସେଠ୍ ସାହେବ ?

ବଂଶଲାଲ—ବାସ୍ --ବାସ୍--ଏ ବାତ୍ ପକ୍‌କା—କେଇଁ କ ଖାଁ । ସାହେବ ଠିକ୍ ହୈନା ?

ଜଲାଲ—ହୁଁ ବଲ୍ କୁଲ୍ ଠିକ୍ ହୈ ।

ଅବମା—ଅଚ୍ଛା, ତା'ହେଲେ ଆମେ ଉଠୁ—

( ଦୁଷ୍ମନ୍ତ ଓ ତୁଷାର ବ୍ୟତୀତ ଅନ୍ୟମାନେ ଚାଲିଗଲେ )

ଦୁଷ୍ମନ୍ତ—ତୁଷାର.........

ତୁଷାର—ମୁଁ ସବୁ ଶୁଣିଛି ଦୁଷ୍ମନ୍ତ—ଲୋକେ କହୁଚନ୍ତ, ଦୁଷ୍ମନ୍ତ ବୋକାଟାଏ । ବୃଥାରେ ଲକ୍ଷ ଲକ୍ଷ ଟଙ୍କା ପାଣିକି ଫିଙ୍ଗି ଦେଉଛି ।

ଦୁଷ୍ମନ୍ତ—ସେ କଥାରେ ତୁ କାନ ଦେ'ନା ତୁଷାର । ମୁଁ ସ୍ଥିର ସିଦ୍ଧାନ୍ତ କରିସାରିଛି—ସେବା ହିଁ ମୋ ଜୀବନର ଏକ-ମାତ୍ର ବ୍ରତ । କିନ୍ତୁ ଏମାନଙ୍କର ଦାନକୁ ଅନାଇ ବସିଲେ ଚଳିବ ନାହିଁ । ଏମାନଙ୍କର ଦାନ ଅପେକ୍ଷା ଗୋଟେ ବଡ଼ ଦାନ ମୁଁ ତୋ'ଠାରୁ ଭିକ୍ଷା ମାଗୁଛି—

ତୁଷାର—ମୋଠାରୁ—କଣ ?

ଦୁଷ୍ମନ୍ତ—ଏଥିରେ ତୁ ଆଜ ଷଣପ୍ରଭା ଉଦ୍ୟମେ ଯୋଗ ଦେବାକୁ ପଡ଼ିବ ।

ତୁଷାର—ଷଣପ୍ରଭା !

ଦୁଷ୍ମନ୍ତ—ହଁ ଷଣପ୍ରଭା । ସେ ଆସି ତୋତେ ସାହାଯ୍ୟ କରିବେ । ସେ ଖାଲି ବିଦୁଷୀ, ବୁଦ୍ଧିମତୀ ନୁହନ୍ତି—ସେ ଆଦର୍ଶ ପତ୍ନୀ, ଆଦର୍ଶ ଗୃହିଣୀ—ଆଦର୍ଶ ସେବିକା । କହ, ତୋର ମତ କଣ ?

ତୁଷାର—ମୋ କଥା ଥାଉ, କିନ୍ତୁ ସେ କଣ ଏଥିରେ ରାଜି ହେବେ ?

ଦୁଷ୍ମନ୍ତ—ନ ହେବେ କାହିଁକି ?

ତୁଷାର—ଏ କଥାର ଉତ୍ତର ଏକା ସେ ଦେଇ ପାରିବେ ଜୋତ୍ରା ସ୍କୁଲରେ ମାଷ୍ଟ୍ରାଣୀ ହେବାକୁ ରାଜି ହେଲେନି କାହିଁକି ?

ଦୁଷ୍ମନ୍ତ—ସେ ଭିନ୍ନ କଥା । ଅରକ୍ଷଣିବାସ ପାଇଁ ଯେଉଁ ସମ୍ପତ୍ତି ମୁଁ ଦାନ କରିଛି, ତାର ପ୍ରକୃତ ମାଲିକ ସେଇ ଅନାଥ, ଅକ୍ଷମମାନେ । ତମେ ଧର୍ମେ ହେବ ଅରକ୍ଷଣିବାସର ରକ୍ଷକ ।

ତୁଷାର—ମୁଁ ତ କହୁଚି ଦୁଷ୍ମନ୍ତ, ତୋର ଏ ପ୍ରସ୍ତାବରେ ମୁଁ କେବଳ ରାଜି ନୁହେଁ—ଦରିଦ୍ର ନାରାୟଣଙ୍କ ସେବା କରି ପାରିବ ବୋଲି, ନିଜକୁ ମୁଁ ଭାଗ୍ୟବାନ ମଣୁଛି । କିନ୍ତୁ—

ଦୁଷ୍ମନ୍ତ—ନା, ତୁଷାର, ତାଙ୍କୁ ଯିମିତି ହେଉ ରାଜି କରାଇବାକୁ ହେବ ।

ତୁଷାର—ବେଶ, ତେବେ କାଲି ମୋ ବସାକୁ, ପ୍ରଭା ଯଦ ସକା

ହୁଏ, ଅରକ୍ଷନବାସର ପରିଗ୍ଳଳନା ପାଇଁ ବୋଧେ ଆଜ କୌଣସି ଅସୁବିଧା ରହିବ ନାହିଁ ।

ଦୁଷ୍ମନ୍ତ—ଗ୍ଳଲ......( ଦୁହେ ଗ୍ଳଲଗଲେ, ଟିକେ ପରେ ଘରକୁ ସୁକାନ୍ତ ଆସିଲେ ଦୁଷ୍ମନ୍ତର ବିଧବା ମା' । ସେ ଦୁଷ୍ମନ୍ତକୁ ଭେଟିବେ ବୋଲି ଆଶା କରି ଆସିଥିଲେ, ଘର ଖାଲି ଦେଖି ସେ ଫେରି ଯାଉଥିଲେ ବାହାରେ ମଟର ରହିବା ଶବ୍ଦ ଶୁଣାଗଲା, ସୁକାନ୍ତ ଅପେକ୍ଷା କଲେ । ଟିକଏ ପରେ ଆସିଲା ହେମାଙ୍ଗିନୀ ) ।

ହେମ—ବୋଉ, ଭାଇ ଘରେ ନାହାନ୍ତି ?

ସୁକାନ୍ତ—ଥିଲାତ, ମୁଁ ଅସିବା ଅଗରୁ କୁଆଡ଼େ ବାହାରିଗଲା ।

ହେମ—ସେ' ଅସିଥିଲେ ପରା, ଗଲେଣି ?

ସୁକାନ୍ତ— କେତେ ଦିନ ଦଇନ୍ଥା ବେଳା ଅସିଥିଲେ । ଏଇ ଘରେ ତାଙ୍କର ସବୁ ଦିନ ମିଟିଙ୍ଗ୍ ହଉଥିଲା । ଏଇନେତ ଦେଖୁଛୁ, କେହି କୁଆଡ଼େ ନାହାନ୍ତି ।

ହେମ—ହଉ, ତୁ ଟିକେ ଏଠି ବସ୍—ବହୁତ କଥା ଅଛି ।

ସୁକାନ୍ତ—ଉପରକୁ ଗ୍ଳଲ ।

ହେମ—ନାଇଁ ବୋଉ, ମୋତେ ବେଳ ହେବନି—

ସୁକାନ୍ତ—ସବୁଦିନେ ତୁ ଇମିତ ଘୋଡ଼ାର ଲଗାମ ଭିଡ଼ି ଅସୁଥିବୁ ?

ହେମ—ହିମିତ ଘର ଦେଖି ତ ଦେଇଛୁ, ଆଉ କହୁଚୁ, କଣ ? ଘର ଗୋଟାକର ଜଞ୍ଜାଳ ମୋରି ମୁଣ୍ଡରେ—

ସୁକାନ୍ତ—ମା'ଟା ପରା—ପୂଜାଘର ବଣ ଏମାନଙ୍କ ପାଇଁ ଜଳଖିଆ କରିଥିଲି—

ହେମ—ତୋ' ଦୟାରୁ ମୋ ଘରେତ ପୂଜାଘର ଅଛି ବୋଉ । ତୋ ପୂଜାଘର ହାତରୁ ଜଳଖିଆ ଖାଇବାକୁ ମୁଁ ଏଠିକି

ଆସିନ । ଭାଇଙ୍କି ବାହ୍ମାଙ୍କର ଘରକୁ ନେବାକୁ ଆଣ, ଦେଖିବୁ, ଓଳିକ ପାଇଁ ଆସି ଖନଓଳି ରହିବ । କଣ କହୁଚୁ କହୁଲ ?

ସୁକାନ୍ତ—ଦୁଷ୍ମନ୍ତର ବାହାଘର କଥା କହୁଚୁଟି ?

ହେମ—ହଁ, ମୁଁ ଖାଲ୍ ସେଇଥିପାଇଁ ଆସିଚୁ ।

ସୁକାନ୍ତ—ଏଇ ଦ'ଦିନ ତଳେ ଅସିତ ସେଇ କଥା କହୁଥିଲା— ଆଜ ପୁଣି କଣ ?

ହେମ—ସେ ଦିନ ତୋତେ ସବୁକଥା ଫିଟାଇ କହିନ । ଆଜ ମୁଁ ଏକାବେଳକେ ପାତ୍ରୀ ଠିକଣା କରି ଆସିଚି ।

ସୁକାନ୍ତ—ପାତ୍ରୀ, କିଏ ?

ହେମ—ରବିବାବୁ ଡାକ୍ତରଙ୍କର ବଡ଼ ଝିଅ, କେମା । ଭାଇଙ୍କ ପାଇଁ ସେମାନେ ଷୋଳଅଣା ରାଜି । କିଏ ଜଣେ ଡିଲ୍ଲୀ-ଫେରନ୍ତା ଇଞ୍ଜିନିୟର୍ ପାଇଁ ତାଙ୍କର ଠିକଣା ହୋଇଥିଲା । ହେଲେ ରବିବାବୁ ତାକୁ ଅଡ଼େଇଦେଇ ଭାଇଙ୍କ ପାଇଁ ରାଜି ହୋଇଚନ୍ତି । କେମାର ରୂପ ଗୁଣତ ବାଛିବାକୁ ହେବନି । ଯୌତୁକ ବି ସେମାନେ ଯଥେଷ୍ଟ ଦେବେ—ଲୁ ମୋତେ ଜିମିତ ଦେଇଥିଲେ । ଭାଇଙ୍କ ପାଇଁ ହେଲେ, ରବିବାବୁ ମଟର ଦେବାକୁ ବି ରାଜି ହୋଇଚନ୍ତି ।

ସୁକାନ୍ତ—ମଟର ଲୋଭ ଦେଖାଇ ତୁ ଦୁଷ୍ମନ୍ତକୁ ରାଜି କରାଇବୁ ?

ହେମ—ଲୁ ପୁଣି ସେଇ କଥା କହିଲୁ । ଭାଇଙ୍କି ରାଜି କରାଇବା କଥା ପଡ଼ିଚି ।

ସୁକାନ୍ତ—ଆଜ ପୁଣି କିଏ ରାଜି ନହବ ?

ହେମ—ଲୁ ।

ସୁକାନ୍ତ—ମୁଁ ? ମୋ ବାଟରେ ଦୁର୍ଦ୍ଦାନ୍ତ ବାଧା ହେବ ! ଏକା ମା' ପେଟର ଭାଇ ଭଉଣୀ ହେଇ, ଆଜି ଯାଏଁ ତୁ ତାକୁ ଚିହ୍ନିଲୁ ନାହିଁ ?

ହେମ—ଭାଇଙ୍କି ମୁଁ ଠିକ୍ ଚିହ୍ନିଛି ବୋଉ, ହେଲେ ଧନକୁ ଧନ ଟୋକେ ଚିହ୍ନିବାରେ ମୋର ଯିମିତି ଭୁଲ ହେଉଛି । ତୁ ତାଙ୍କର ମୁରବି, ତୁ ରାଜି ହେଲେ ସେ ଅରାଜି ହେବେ ?

ସୁକାନ୍ତ—ତୁ ତ ମା' କହୁଛୁ, ଆଉ କିଏ କଣ ନ କହିବ !

ହେମ—କେହି ତ କିଛି କହୁବେନି, ଆଉ ଏ ସବୁ ତୋ ଅଧିକ ଭାବି ଭଲ ଦିଶୁଛି ନା ! ତୁ ବୁଢ଼ୀ ଦିନେ ଇମିତି ହଇରାଣ ହଉଥିବୁ—ତେଣେ ସେ ତାଙ୍କ ମନ ଇଚ୍ଛା ... ...

( କହୁ କହୁ ରହିଗଲେ )

ସୁକାନ୍ତ—କହୁନୁଁ ! ଅଟକି ଗଲୁ କାହିଁକି ?

ହେମ—କହିବି କଣ ! ତୋ ଅଧିକ କଣ ଦେଖାଯାଉନି— । ବେ'ପରୁଆ ହଜାର ହଜାର ଟଙ୍କା ଉଡ଼ାଉଛନ୍ତି । ଇମିତି ବଦଖରଚ କଲେ—

ସୁକାନ୍ତ—ବଦଖରଚ ତୁ କାହାକୁ କହୁଛୁ ହେମ ? ମୋଟା ଖାଇ ମୋଟା ପିନ୍ଧେ—ପାନ ଖଣ୍ଡେ କି ସିଗାରେଟଟାଏ କେବେ ତ ଛୁଇଁବାର ଦେଖିନ । କେବେ କେମିତି ଅବା ଦୁ'ପାଣି ମୁନ୍ଦେ—

ହେମ—କିଏ ମନାକଲା ସଉକ୍ କରିବାକୁ, ମଜଲିସ କରିବାକୁ । ଜାଣିଛନ୍ତି, ନିଜ ପେଟକୁ ଖାଇଲେ କି ବଡ଼ଲୋକର ପୁଅ ବୋଲି ବଡ଼ଲୋକରେ ପାଞ୍ଚ ପଚିଶ ଉଡେଇ ଦେଲେ । ତା ନାଇଁ, ... ... ଦାନ ଖଇରାତ ନାଁରେ ହଜାର ?

ଟଙ୍କା ପାଣିକ ପକେଇଦଉଚନ୍ତି । ମୋ ସାନ ଭୁଆ ମାନ୍‌ ବୋଉ— ତୁ କାନ୍ଦ୍‌ ଧର ବସ— । ବାହାଘରଟା ହୋଇଗଲେ, ଦେଖିବୁ; ତାଙ୍କ ବୁଦ୍ଧି ବଳେ ବଳେ ଫେରି ଆସିବ ।

ସୁକାନ୍ତ—(ହସି)—ଭାଇ ତୋର ମୋଟେ ନବୁଝିଆ ନୁହେଁ ଲୋ ହେମ—ବୁଝି ଫେରିବା କଥା କହୁଛୁ କାହିଁକି ? ପଣ କରିଛି, ବାହା ହେବ ନାହିଁ । ଦରିଦ୍ର ନାରାୟଣଙ୍କ ସେବାରେ ଜୀବନ କଟାଇ ଦବ । ଏଥିରେ ମନ୍ଦ ରହିଲା କେଉଁଠି ? ବଡ଼ଲୋକ ତ ଢେର ଅଛନ୍ତି, ହେଲେ ତା ଭଳି ଇମିତ ନିର୍ଲୋଭରେ ପରପାଇଁ ନିଜ ସଂସାର ଭସାଇଦେବା ଭଳିଆ କେଇଟା ପୁଅ ଅଛନ୍ତି, କହିଲୁ ?

ହେମ—ନିଜେ ରୋଜଗାର କରି ପରପାଇଁ ସଂସାର ଭସାଇଦେଲେ କିଛି କଥା ନ ଥିଲା । ବାପାଙ୍କ ସମ୍ପତ୍ତି ଇମିତ ଉଡ଼େଇ ଦେବାରେ କି ବାହାଦୁରି ଅଛି ? ସେ ଅଧିକାର ବା ତାଙ୍କର ଆସିଲା କୋଉଠୁ ?

ସୁକାନ୍ତ—(ନିଜେ ଆହତ ହୋଇ)- ସେ ତୋର ବଡ଼ ଭାଇ ହେମ— ଏ ଘରର ପୁଅ ।

ହେମ—(ଅଭିମାନରେ)— ମୋର ଭୁଲ ହୋଇଛି ବୋଉ । ମୁଁ ଜାଣେ, ମୁଁ ଏ ଘରର କେହି ନୁହେଁ । ଭଲ ମନ୍ଦରେ ପଦେ କଥା କହିବାକୁ ମୋର ଅଧିକାର ନାହିଁ । ହେଲେ ଏଇ ଘରେ ମୁଁ ଜନ୍ମ ହୋଇଥିଲି, ସେଇଥି ପାଇଁ ବାପ-ଅଜା, ବାରକଥା ଶୁଣିଲେ ମନ ସମ୍ଭାଳି ହୁଏ ନା— ଏଟିକି ଧାଇଁ ଆସେ । କାହିଁକି ? ମ୍ଳାନ ହୋଇଛି, ବାପାଙ୍କ ଅମଳର ଅସ୍ତାବଲ, ମୋଟରଗାରେଜ, ମଡ଼କଲ

ଖାନା, ଦର୍‌ଓ୍ୱାନ୍ କୋଠୀ, ବାହାର ବୈଠକ ଖାନା ଏ ସବୁଥିରେ ଅବଳାନିବାସ ଖୋଲାଯିବ । ଓକିଲ୍ ମନ୍ମଥ ବାବୁ ବସୁଥିଲେ ତେଣେ ଯେଉଁ ଘରଦ୍ୱାର ଘୁ ଘୁ ବସୁଥିଲା ସେଠି ଆଜ ରାଜ୍ୟଯାକର ରୋଗୀ ଭିକାରୀ ଆସ୍ଥାନ ମାଡ଼ି ବସିବେ । ଦେଖେ ତୁ ଏଡ଼େ ତୋ ଶୋଇଲା ଘର ଏଥିରୁ ବାଦ୍ ଯିବନି ।

ସୁକାନ୍ତ—ମୋ କଥା ତୁ ଭାବନା ମା । ମୋର ରାଧାମାଧବ ଅଛନ୍ତି । ସେ ମୋତେ ଯୁଆଡ଼େ ବାଟ କଢ଼େଇ ନେବେ, ମୁଁ ସିଆଡ଼େ ଯିବି ।

ହେମ—ଏତ ବଡ଼ ଗୋଟାଏ ଖାନ୍‌ଦାନ ଘରର ଧନ ସମ୍ପତ୍ତି ତ ଯିବ । ତା ସଙ୍ଗେ ସଙ୍ଗେ, ଏ ଘରର ମାନ ମହତ୍ତ୍ୱରେ ବି କଳଙ୍କ ଲାଗିବ ?

ସୁକାନ୍ତ—କଳଙ୍କ ? କାହିଁକି ହେମ ? ତୁମ୍ଭେ କଣ ମୋର.....?

ହେମ—ପ୍ରାଣକୁ ବାନ୍ଧୁଚି ବୋଲି ସବୁକଥା ତୋତେ ନ କହି ରହିପାରୁନି । ଏତେ ଲୋକ ଥାଉ ଥାଉ ଅବଳାନିବାସ ଚଳାଇବା ପାଇଁ ତୁଷାରକାନ୍ତିକୁ ଭାଇ ବାଛିଲେ କାହିଁକି ? ଯା ମନରେ କଣ ଅଛି ଜାଣୁ ? ସେଇ କ୍ଷଣପ୍ରଭା..........

ସୁକାନ୍ତ—କ୍ଷଣପ୍ରଭା ???

ହେମ—ହଁ, ଯାହାକୁ ଦିନେ ତୁ ବୋହୂ କରି ଆଣିବୁ ବୋଲି ପାଗଳ ହୋଇ ଉଠିଥିଲୁ । ସେଇ ପ୍ରଭା—ସେ ଆଜି ପରର ସ୍ତ୍ରୀ—କିନ୍ତୁ ଭାଇ ଆଜିକାଲି ଯେ ତା ଘରକୁ ପ୍ରତିଦିନ ଯାଉଛନ୍ତି— ଏ ଖବର ତୁ ରଖିଚୁ ?

( ହେମର କଥା ଶୁଣିଲାବେଳଠୁ ସୁକାନ୍ତ ଯେପରି ଅନ୍ୟମନସ୍କ ହୋଇ ପଡ଼ିଥିଲେ )

ବୋଉ—ବୋଉ—ବୋଉ—

ସୁକାନ୍ତ—ହିଁ.........

ହେମ—ତୁ ସତ କହୁଛୁ ବୋଉ, ଯାହାକୁ ଧନେ ସେ ଭଲ ପାଉଥିଲେ ତା, ସହିତ ଇମିତ ସମ୍ପର୍କ ରଖିବା ଦ୍ୱାରା—

ସୁକାନ୍ତ—ପ୍ରଭା ଭାରି ଦୁଃଖରେ ଅଛି ହେମ ?

ହେମ—ଯାହା ଭାଗ୍ୟରେ ଦୁଃଖ ଭୋଗିବାକୁ ଅଛି, ସେ ଦୁଖରେ ନ ରହିବ କମିତ ? (କଥାର ସ୍ୱର ବଦଳାଇ )-ଦାଣ୍ଡଲୋକେ ଯଦି ଏ ଦୁହିଁଙ୍କୁ ଲକ୍ଷ୍ୟ କରି ପାଞ୍ଚକଥା କୁହନ୍ତି ତେବେ ତୁ ସହିପାରିବୁ ନା ମୁଁ ସହି ପାରିବ ।

ସୁକାନ୍ତ—ଅନ୍ଧ ସ୍ୱାମୀକୁ ନେଇ କମିତ ସେ ସଂସାର ଚଳଉଛି ? ମୁଁ ଜାଣିଚି ତାକୁ, ଭାଙ୍ଗିଯିବ ପଛେ, ନଇଁବ ନାହିଁ । ନିଜର ମା' ନ ଥିଲା ବୋଲି ମୋଠେ ସେ ମା'ଠାରୁ ବଳି ଆଦର ନେଇଥିଲା । ତା ଭାଗ୍ୟରେ ପୁଣି ଏ ଦୁଃଖ ଥିଲା । ତୋର ଦେଖାହୁଏ ତା ସାଥିରେ ?

ହେମ—( ଧିରଭାବରେ )—ନା ! ( ପୁଣି କଥାରେ ସ୍ୱର ବଦଳାଇ ) ଭାଇଙ୍କୁ ମୁଁ ଜାଣେ । ତାଙ୍କଠି ମନ୍ଦ ଥିଲା ନାହିଁ—ହେଲେ ମଣିଷ ପ୍ରକୃତି କେତେବେଳେ କୁଆଡ଼େ ଚଳିବ—କିଏ ଜାଣେ ।

ସୁକାନ୍ତ—ପ୍ରଭାର ବସା ଠିକଣା ତୁ ଜାଣୁ ?

ହେମ—ନା--। ମୁଁ ତୋତେ ନେହୁରା ହଉଚି ବୋଉ ଏଇ ଗୋଟେ କଥାକୁ ତୁ ନଜର ଦେ । ଏ କଥାରେ ଯମିତ

ଭଲଙ୍କ ନ ଲଗୁ । ( ପ୍ରଭା କଥା ଶୁଣିଲା ବେଳଠୁଁ ସୁକାନ୍ତ କେବଳ ତା'ର କଥାହିଁ ଭାବୁଥାନ୍ତି )

ସୁକାନ୍ତ—କୋଉଠି ତା ବସା—କିଏ ଜାଣିଛ ? ବଇଁଶୀ, ବଇଁଶୀ—( ଡାକଲେ )

ହେମ—ତା ବସା ରଜାବଗିଚ୍ଚାରେ—ଚାହ୍ନି ବାବୁ ଲେଖକଙ୍କ ବସା ସାମନାରେ—ତୁ ଯିବୁ ?

ସୁକାନ୍ତ---ହଁ ।

ହେମ—ଏଇନେ--- ?

ସୁକାନ୍ତ—ହଁ ।

ହେମ---ବେଶ୍, ତାହେଲେ ଚାଲ, ମୋ ଗାଡ଼ିରେ ମୁଁ ନେଇ ଯିବ । ତାକୁ ବୁଝେଇ ସୁଝେଇ କହୁ ଅସିବୁ—ତୋ କଥା ସେ ଶୁଣିବ । ଭଗବାନ ତାକୁ ଦୁଃଖ ଦେଇଛନ୍ତି, ତା ଭାଗ୍ୟ ସେ ଭୁଞ୍ଜୁ । ଘର ନାଆଁରେ ଗୋଡ଼ ଦେଉଛି କାହିଁକ ? ( ଡାକଲ ) ଡ୍ରାଇଭର---ଡ୍ରାଇଭର······

ସୁକାନ୍ତ---ତୋ ଗାଡ଼ିରେ ମୁଁ ଯିବ ନାହିଁ ମା--ତୋ ସାଥିରେ ବ ମୁଁ ଯିବନି । ମୁଁ ଏକା ଯିବ । ବଇଁଶୀ--ଭଡ଼ାଟିଆ ଆଣିକୁ କହ, ଗାଡ଼ି ବାହାର କରିବ ।

( ଭିତରକୁ ଚାଲିଗଲେ—ହେମ ଠିଆ ହୋଇଥାଏ )

—ପରଦା—

# ଷଷ୍ଠ ଦୃଶ୍ୟ

[ ତୁଷାରକାନ୍ତଙ୍କ ଗୃହର ଅଳନ୍ଦ ]

ମୀର—(ପ୍ରବେଶକରି) ନୂଆବୋଉ, ନୂଆବୋଉ !

ପ୍ରଭା—(ଭିତରୁ) କ'ଣ ?

ମୀର—ଏଇ ପିଣ୍ଡାକୁ ଆସ, ଭଲ ପବନ ହଉଛି ।

ପ୍ରଭା—(ଆସି) ମୁଁ ପୁଣି ପବନ ଖୋଜିଲି କେବେଠେବେଳେ ?

ମୀର—ଏଇଠି ବସ ।

ପ୍ରଭା—କାହିଁକି ?

ମୀର—ମୋ ପାଖେ ବସ । (ପ୍ରଭା ବସିଲା) ତମେ ଶୋଇ ରହିଲେ ମୋର ଭୟ ହୁଏ । ପୁଣି ତମକୁ ଜର ହେଲାଣି ? ସେଇଥିପାଇଁ ଏଠିକି ଡାକି ଆଣିଲି । ସତେ, କେଇଟା ଦିନ ଜରରେ ତମେ କେତେ......

ପ୍ରଭା— (ବାଧାଦେଇ) ମୋଟେ ନୁହେଁ, ମୋଟେ ନୁହେଁ, ମୁଁ ଉଠେଇବା ଝୁଣ୍ଡ ଯାଇନି । ବରଂ ମୋ ପଛରେ ଖଟି ଖଟି ତମେ ହାଲିଆ ହୋଇ ପଡ଼ୁଛ । ଆସ, ତମ ଆଲ୍‌ଜେବ୍ରା ବହି ଏଠିକି ଆଣ, ଇକ୍ୟୁଏସନ୍‌ଟା ହଉ ନ ଥିଲା ପରା, ବୁଝେଇ ଦେବି ।

ମୀର—ଅଉ କଣ ! ଜରରୁ ଉଠି ମୋ ପାଇଁ ପରିଶ୍ରମ ନ କଲେ ଚଳନ୍ତି । ତମ ଦେହ କ'ଣ ହେଲେ ଆମ ବଞ୍ଚିଣ ସାସ୍ଥ୍ୟ ଗ୍ଳାନିଆ । ଭାଇଙ୍କ ଅବସ୍ଥା ଦେଖିଲେଣି, ପିଲାଙ୍କପର କାନ୍ଦ ପକାଇଲେ । ହଁ, ନୂଆବୋଉ, ସତରେ କ'ଣ ଭାଇ ଦୁଷ୍ମନ୍ତ ବାବୁଙ୍କ ଅବଷ ନିବାସ ଚଳାଇବେ ?

ପ୍ରଭା—ତାଙ୍କ ଇଚ୍ଛା ସେଇଆ—

ମାଉ—ତମ ଇଚ୍ଛା କ'ଣ ?

ପ୍ରଭା—ମୁଁ ତ ତାଙ୍କୁ କହି ଦେଇଚି, କେହି କୁଆଡ଼େ ଯିବା ଦରକାର ନାହିଁ । ସେ ଘରେ ବସି ଲେଖନ୍ତୁ ପଢ଼ାବନ୍ତୁ, ଛୋଟ ପିଲାଙ୍କ ବହି । ପେଟ ଅପୋଷା ରହିବନି । ମୁଁ ମଧ୍ୟ ଘରେ ବହି ଖାତା ପତ୍ର ତିଆରି କରି ନାରୀ ମଙ୍ଗଳ ସମିତି ଜରିଆରେ ବିକ୍ରୀ କରିବ । ଦେଖିବ, ଦୁଃଖ, ଅଭାବ ରହିବ ନାହିଁ ।

ମାଉ—ସତ କଥା, ସମସ୍ତେ ଘରେ ରହିବେ, ଭାରି ଭଲ ହେବ । ମୁଁ କିନ୍ତୁ ଆଗରୁ ପଢ଼ିବି—ଏମ୍. ଏ. ପାଶ୍ କରି ଚାକିରି କରିବ, ତାପରେ ତୁମକୁ ଆଉ କାମ କରିବାକୁ ଦେବନି ।

ପ୍ରଭା—ତମେ ଚାକିରି କରିବା ନ କରିବା ତମ ସ୍ୱାମୀଙ୍କ ଇଚ୍ଛା ଉପରେ ନିର୍ଭର କରେ ।

ମାଉ—ଯାଃ—

ପ୍ରଭା—ସତ କଥା ମାଉ, ମୁଁ ଯାହା ଠିକ୍ କରି ରଖିଛି, ତମେ ବିବାହ କରିବ ।

ମାଉ—ଏ କଥା ତୁମେ କହୁଛ ନୂଆବୋଉ !

ପ୍ରଭା—କାହିଁକି ? ମୁଁ ବାହା ହୋଇ ସୁଖୀ ହୋଇନି ବୋଲି ତୁମର ଧାରଣା, ନା ? ବଳପୁର୍ ଜମିଦାର ପରଶୁରାମ ଚୌଧୁରୀଙ୍କ ସମ୍ପତ୍ତିର ମୂଲ୍ୟ ଲକ୍ଷେ ଟଙ୍କାରୁ କମ୍ ହେବନି । ତାଙ୍କର ଝିଅ ମୁଁ । ଚାହିଁଥିଲେ ଆଜି ଜଣେ ଲକ୍ଷପତିର ସ୍ତ୍ରୀ ହୋଇ ପାରିଥାନ୍ତି । କିନ୍ତୁ ମୁଁ ହସି ହସି ଏ ଘରକୁ ଆସିଛି । ବାପଘରୁ ପାହୁଲଟିଏ ସାହାଯ୍ୟ ନେଇନି । କିନ୍ତୁ କେବେ ଦେଖିଛ ଭଲା, ମୋ ଅବସ୍ଥା ପାଇଁ ମୁଁ

ଦୁଃଖ କରୁଛ ? ଆମେ ମଣିଷ, ମାଉ—ଆମେ ଅମୃତର ସନ୍ତାନ ! ଆମର ସମସ୍ତ ଶକ୍ତି ଖଟେଇ ପରିଶ୍ରମ କରିବା । ସୁଫଳ-କୁଫଳ ଫଳିବ । ଯେ କୌଣସି ସାଇଣ୍ଟିଫିକ୍ ଥିଓରି ପରି ଏହା ସତ, ଜାଣିଲ ।

ମାଉ—ଯେତେ ଗରିବ ହେଲେବି, ତୁମର ଏ କଥା ଶୁଣି ମନରେ କେତେ ବଳ ଆସୁଛି ।

ପ୍ରଭା—ଗୋଟେ କଥା ମୁଁ ପଚାରିବି ମାଉ । ତୁମ ପିଲା ମନରେ ଭାବି ଉତ୍ତର ଦିଅ—

ମାଉ—କ'ଣ ?

ପ୍ରଭା—ଦୁଷ୍ମନ୍ତବାବୁ କମିଶନ ଲୋକ, ତାଙ୍କ ପ୍ରତି ତୁମର ଧାରଣା କ'ଣ ?

ମାଉ—(ଡରି ଡରି) ଦୁଷ୍ମନ୍ତ ବାବୁ...... ?

ପ୍ରଭା—ଦେଖିଲତ, ମୁଁ ଜରରେ ପଡ଼ିଥିବା ବେଳେ ଡାକ୍ତର, ଔଷଧ, ପଥ୍ୟ ସବୁ କଥା ମୋ ପାଇଁ ଖଞ୍ଜିଲେ । ଆଜି ବି କେତେ କ'ଣ ଦେଇଛନ୍ତି, ଏଥିରୁ ତୁମେ କ'ଣ ବୁଝୁଛ ?

ମାଉ—ସତ କହୁଛି ନୂଆବୋଉ, କଏ କମିଶନ ଲୋକ ମୁଁ ମୋଟେ ବୁଝି ପାରେନା । ତମେ ଜରରେ ବେହୋସ ହୋଇ ପଡ଼ିଥିଲ, ବୋଉ ଦୁଷ୍ମନ୍ତ ବାବୁଙ୍କ ଆଗରେ ଆମ ଦୁଃଖ ଗାଇ ବସିଲା । ମୋତେ ଏକା ଭାରି ଲାଜ ମାଡ଼ିଲା । କମିଶନ ଭଦ୍ରଲୋକ, ସେ ! ଘର ଘରକୁ ଅସି ହାନି ଲାଭ ବୁଝୁଛନ୍ତି ତାହିଁକି ? କଏ ଯୁଆଁଙ୍କୁ ଡାକୁଛି ?

ପ୍ରଭା—ସେଇକଥା ମାଉ, ଦୁଷ୍ମନ୍ତବାବୁ ଆସୁଥିଲେ, ଯାଉଥିଲେ କିଛି କଥା ନ ଥିଲା । ବନ୍ଧୁବୋଲି ଆମକୁ ହାତ ଟେକି

ଦେଲେ ହୋଲ୍ ତାଙ୍କ ଭଲମନ୍ଦ କଥା ପଡ଼ନ୍ତି ।
ଏଇଟା ସଂସାରର ନିୟମ । ଯାହା ହେବାର ହୋଇ-
ଯାଇଛି, ଏଣିକି ସତର୍କ ହେବାକୁ ହେବ । ଆଜ ପିମିତି
ଭୁଲ ନ ହୁଏ ।

ମୀର— (ବାହାରକୁ ଗୃହ୍ଁ) ନୂଆ ଲୋକ, ଭାଇ ଅଜ ଦୁଷ୍ମନ୍ତବାବୁ ।

ପ୍ରଭା—କାହିଁକି ?

ମୀର—ଦାଣ୍ଡଘରେ—

ପ୍ରଭା—(ସେ ଆଡ଼କୁ ଗୃହ୍ଁ) ତେବେ ଯାଅ ମୀର, ଦୁଷ୍ମନ୍ତ ବାବୁଙ୍କ ପାଇଁ
ଚା' ତିଆରି କର ।

—ପରଦା—

## ସପ୍ତମ ଦୃଶ୍ୟ

[ ତୁଷାରକାନ୍ତଙ୍କର ଘର । ଦୁଷ୍ମନ୍ତ ଓ ତୁଷାର ଆସିଲେ ]

ତୁଷାର—ତୁ ବସ ଦୁଷ୍ମନ୍ତ ······ (ତୁଷାର ଯିବାକୁ ଲାଗିଲା)

ଦୁଷ୍ମନ୍ତ—ତୁ ଚାଲି ଯାଉଛୁ ଯେ·········· ?

ତୁଷାର—ମୋର ଚାଲିଯିବା ଉଚିତ । ମୁଁ ନ ଥାଇ କଥାଟା ପଡ଼ୁ ।

( କ୍ଷଣପ୍ରଭା ଆସିଲା )

ପ୍ରଭା—କି କଥା ?

ତୁଷାର—ଦୁଷ୍ମନ୍ତ କହିବ କି କଥା, ସେ ତମର ପାଖକୁ ଆସିଛି
ପ୍ରଭା, ତା କଥା ଶୁଣ । (ଚାଲିଗଲା)

ଦୁଷ୍ମନ୍ତ—ଆପଣ ଏବେବି ଦୁର୍ବଳ ଜଣା ପଡ଼ୁଛନ୍ତି ?

ପ୍ରଭା—ନା, ନା, ମୁଁ ସଂପୂର୍ଣ୍ଣ ଭଲ ହୋଇ ଗଲିଣି, ଆପଣ ବସନ୍ତୁ ।
କୁହନ୍ତୁ କି କଥା ।

ଦୁଷ୍ମନ୍ତ—ଆପଣ ତ ଜାଣନ୍ତି, ଅରକ୍ଷନିବାସର ସମସ୍ତ ଖର୍ଚ୍ଚ ଉଷାର ନେଇଛି ।

ପ୍ରଭା—ମୁଁ ଶୁଣିଛି ।

ଦୁଷ୍ମନ୍ତ—କିନ୍ତୁ ସେ ଏକା ତ'ଣ ଏତେବଡ଼ କାମ ତୁଲେଇ ପାରିବ ?

ପ୍ରଭା—ଠିକ୍ ବୁଝି ପାରିଲିନି—

ଦୁଷ୍ମନ୍ତ—ଆପଣ ତାକୁ ସାହାଯ୍ୟ ନ କଲେ·········

ପ୍ରଭା—ଓ·········(ତଳକୁ ମଥା ପୋତେଇ)

ଦୁଷ୍ମନ୍ତ—ସେଇ ଅନୁରୋଧ ମୁଁ ଆପଣଙ୍କୁ କରିବାକୁ ଆସିଛି । ମୋର ଫିମ୍ ହଜିଛି, ଆପଣ ବୁଝିବେ ସେଠି କାମ କରିବେ । ଆଉ ସେଥିପାଇଁ ମାସକୁ ଶହେ ଟଙ୍କା ଲେଖାଏଁ·········

ପ୍ରଭା—ଶହେଟଙ୍କା ଲେଖାଏଁ ଦରମା ଆପଣ ଆମକୁ ଦେବେ, ଏଇଆ ତ ?

ଦୁଷ୍ମନ୍ତ—ଦେଖନ୍ତୁ, ଅରକ୍ଷନିବାସ ପାଣ୍ଠିକୁ ଯେଉଁ ଟଙ୍କା ମୁଁ ଦେଇଛି, ତା' ଆଜି ମୋର ନୁହେଁ । ସେଇ ଦରିଦ୍ର ନାରାୟଣଙ୍କର । ସେଥିରୁ ଆପଣ ଏ ପାରିଶ୍ରମିକ ନେବେ ।

ପ୍ରଭା—ଆପଣଙ୍କର ନିଜର ଦାନ କ'ଣ ଆମେ ନେଇନୁ ? ମୁଁ ଜରରେ ପଡ଼ିଥିଲି—ଆପଣତ ଏଇ ସଂସାରକୁ ଚଳେଇ ନେଇଛନ୍ତି ।

ଦୁଷ୍ମନ୍ତ—ଜଣେ ବନ୍ଧୁର କର୍ତ୍ତବ୍ୟ ହିସାବରେ ମୁଁ ଯାହା କରିଛି, ଆପଣ ତାକୁ ଦାନ ବା ଦୟା କହି ପାରିବେ ନାହିଁ ।

ପ୍ରଭା—ଆପଣଙ୍କର ଏ ପ୍ରସ୍ତାବରେ ଆପଣଙ୍କର ବନ୍ଧୁଙ୍କ ମତ କଣ ?

ଦୁଷ୍ମନ୍ତ—ଆପଣ ଦୟା କରି ତାକୁ ଏଠିକି ଡାକନ୍ତୁ, ସେ କଣ୍ଟ୍ରୁ ମତ କଣ ? ( କଥାଟା କହି ସ୍ୱସ୍ତିର ନିଶ୍ୱାସ ମାରିଲେ )

ପ୍ରଭା—ଅଚ୍ଛା । ( ମୀର ଚା' ଧରି ଆସିଲା ) ଦୁଷ୍ମନ୍ତ ବାବୁଙ୍କୁ ଚା' ଦିଅ—ମୀର—ମୁଁ ଆସୁଚି । ( ପ୍ରସ୍ଥାନ )

ଦୁଷ୍ମନ୍ତ—ଏବେ ଚା'ତ ମୁଁ ଖାଏନା । ତମ ଘରକୁ ଆସିଲେ ଚେ ଚା' ଖାଇବି—ଏ କଥା କିଏ କହିଲା ?

ମୀର—ନୂଆବୋଉ ।

ଦୁଷ୍ମନ୍ତ—( ଚା'ଖାଇ ଖାଇ ) ତମର ମତ କଣ ? ତମ ଭାଇ ଓ ନୂଆବୋଉ ଦୁହେଁ ଅରକ୍ଷଣାବାସର ଭାର ନେବେ...

ମୀର—ନା ।

ଦୁଷ୍ମନ୍ତ—ନା ?

ମୀର—ଭାଇ କି ନୂଆବୋଉ କେହି ବାହାରକୁ ଯିବେନି । ଭାଇ ଲେଖାଲେଖି କରିବେ । ନୂଆବୋଉ ଘିଲେଇ କାମ କରିବେ ।

ଦୁଷ୍ମନ୍ତ—ତମେ ଠିକ୍ ଜାଣ ?

ମୀର—ହଁ, ନୂଆବୋଉ ଠିକ୍ ଏଇଆ କହୁଥାନ୍ତି । ଆଜି ମୁଁ ଜାଣେ ନୂଆବୋଉ ଯାହା ଥରେ ଠିକ୍ କରିବେ, ସହଜରେ ସେଥିରୁ ଟଳିବେ ନାହିଁ ।

ଦୁଷ୍ମନ୍ତ—ହୁଁ । ( ଦୁଷ୍ମନ୍ତ ଆଉ ଚା' ନ ଖାଇ ରଖିଦେଲେ—ତୁଷାର ଓ ପ୍ରଭା ଆସିଲେ )

ତୁଷାର—ତୁ ମୋତେ ଡାକୁଥିଲୁ ଦୁଷ୍ମନ୍ତ ? ( କପ୍ ନେଇ ମୀର ଚାଲିଗଲା )

ଦୁଷ୍ମନ୍ତ—ହଁ, ତୁ ବସ । ମୀରଠାରୁ ମୁଁ ସବୁ ଶୁଣିଲିଣି ପ୍ରଭାଦେବୀ । ଆପଣଙ୍କ ଇଚ୍ଛା ବିରୁଦ୍ଧରେ ମୁଁ ଯିବିନି ।

ପ୍ରଭା—ତଥାପି ଆପଣଙ୍କର ବନ୍ଧୁ କୁହନ୍ତି, କଣ ତାଙ୍କର ଇଚ୍ଛା ।

ତୁଷାର—ମୋର ଅନ୍ତରର କଥା ମୁଁ କହୁଚି ପ୍ରଭା, ଅରକ୍ଷଣିବାସର ସେଇ ହତଭାଗ୍ୟ ରୋଗୀ, ଦୁଃଖୀ, ଅନ୍ଧ ଅପାରଗମାନଙ୍କର ସେବା କରିବା ପାଇଁ ମୋ ଆଗ୍ରହର ଅନ୍ତ ସୀମା ନାହିଁ । ଏଇଥିପାଇଁ ଦେଶରେ ମୁଁ ଜନ୍ମ ହେଇଛି ।

ପ୍ରଭା—ତମ ଆଗ୍ରହରେ ମୁଁ ମୋଟେ ବାଧା ଦେବନି—ବରଂ ହସି ହସି ତୁମ ସହିତ ଯୋଗ ଦେବି । କିନ୍ତୁ ଏ କାମ ପାଇଁ ଯେ ଆମେ ଉପଯୁକ୍ତ, ଏହାର ପ୍ରମାଣ କାହିଁ ? ତୁମେ ଅନ୍ଧ, ଅକ୍ଷମ; ଆମେ ଗରିବ । ଜୀବନ ସଂଗ୍ରାମରେ ଏପର୍ଯ୍ୟନ୍ତ ଆମର କେବଳ ହାରିବାହିଁ ସାର ହେଇଛି । ସେଥିପାଇଁ ମୁଁ କହୁଛି, ଆମ ନିଜ ବାଟରେ ଚାଲିବାକୁ ଆମକୁ ଛାଡ଼ି ଦିଅନ୍ତୁ । ଆମ ବୁଦ୍ଧି ବଳ ଖଟେଇ ଆମେ ଆଗେ ଦେଖୁଁ, ଏ ଦୁନିଆରେ ବଂଶ ରହିବାର ଦାବୀ ଆମର ଅଛି କି ନାହିଁ ? ତାପରେ ଆମେ ବଳେ ବଳେ ଅରକ୍ଷଣିବାସର ଭାର ନେବୁ । ବନ୍ଧୁଭାବ ଖାତିରରେ ଦୁଷ୍ମନ୍ତ ବାବୁ ଆମକୁ ଦୟା ଦେଖେଇଚନ୍ତି ବୋଲି ସେତେବେଳେ ଆଉ କହିବାକୁ କେହି ନ ଥିବେ ।

ଦୁଷ୍ମନ୍ତ—ବେଶ୍, ତାହାହିଁ ହେବ । ଆପଣଙ୍କର ବନ୍ଧୁର ଇଚ୍ଛାରେ ମୁଁ କେବେହେଲେ ଯିବିନି । ( ଠିକ୍ ଏତିକିବେଳେ ବାହାରୁ ସୁକାନ୍ତଙ୍କର ଡାକ ଶୁଭିଲା )

ସୁକାନ୍ତ—( ବାହାରୁ ) ସ୍ୱର୍ଣ୍ଣପ୍ରଭା--ସ୍ୱର୍ଣ୍ଣପ୍ରଭା---

ତୁଷାର—ଏତିକି ସମସ୍ତେ ତମକୁ ପ୍ରଭା ବୋଲି ଡାକନ୍ତି—ସ୍ୱର୍ଣ୍ଣପ୍ରଭା ବୋଲି କିଏ ଡାକୁଚି ? ( ସୁକାନ୍ତ ଆସିଲେ-ତାଙ୍କର ଏ

ଅପ୍ରତ୍ୟାଶିତ ଆଗମନରୁ କେହବି ହଠାତ୍ କେହୁ ବିଶ୍ୱାସ କରି ପାରିଲେନି )

ଦୁଷ୍ମନ୍ତ—ବୋଉ, ତୁ କମିତି ଏଠି ?

ତୁଷାର—ମାଉସୀ ଆସିଛନ୍ତି ଦୁଷ୍ମନ୍ତ ?

ଦୁଷ୍ମନ୍ତ—ହଁ । ( ପ୍ରଭା ଅପଲକ ନେତ୍ରରେ ସୁକାନ୍ତଙ୍କ ମୁହଁ ଚାହିଁଥାଏ । ତା ପାଟିରେ କଥା ନାହିଁ । ଗୋଟାଏ ଆବେଗରେ ସେ ମୁଣ୍ଡ ଲଗେଇ ପ୍ରଣାମ କଲା—ସୁକାନ୍ତ ତାକୁ ଉଠାଇ ଛାତିରେ ଜାକି ଧରିଲେ )

ସୁକାନ୍ତ—ଜୀବନରେ ଇମିତି ଦେବୀଙ୍କୁ ଥରେ ଛାତିରେ ଭିଡ଼ି ଧରିଛି, ସବୁ ଭୁଲିଗଲି ? ଏଇଠି କହିବରେ, ଏ ଅବସ୍ଥାରେ ଅଛୁ—ଥରେ ହିଁ ଏତେ ମୋ ପାଖକୁ ଗଲୁନି, ଝିଅ ହେଇ କହି ଇମିତି ମା'କୁ ଭୁଲି ଯାଆନ୍ତି ? ତୋ ଶାଶୁ ଭାହାନ୍ତି ?

ପ୍ରଭା—ସେ ଘରେ— ଅଛନ୍ତି । ( ଦୁହେଁ ଗୃହରେ ଗଲେ—ଦୁଷ୍ମନ୍ତ ଓ ତୁଷାର ସିମିତି ବସି ରହିଥାନ୍ତି—କିଛି ସମୟ ପାଇଁ ତାହାର ମୁହଁରେ କଥା ନାହିଁ )

ଦୁଷ୍ମନ୍ତ—ତୁଷାର, ବୋଉ ହଠାତ୍ ଆସିଲା ବାହିଁକି ?

ତୁଷାର—କମିତି କହିବି ?

ଦୁଷ୍ମନ୍ତ—କିଛି ଅନୁମାନ କରି ପାରୁନୁ ?

ତୁଷାର—ନା—

ଦୁଷ୍ମନ୍ତ—ତୋ' ବସା ଠିକଣା ସେ ପାଇଲେ କମିତି ? ମୁଁ ତ କେବେ କହିନି । ତୁ କହିଚୁ ?

ତୁଷାର—ନା ତ— ।

ଦୁଷ୍ମନ୍ତ—ଏକାନ୍ତ ଦରକାର ନ ପଡ଼ିଲେ ବୋଉ କୁଆଡ଼େ ଯାଏନା—ଏଠିକି ଆସିଲ କାହିଁକି ? ମୋତେ ଏଠି ଦେଖିବ ତ କିଛି କହିବ ନାହିଁ । ( ମୀର ପଶିଲ )

ମୀର—ହୁଇ, ବୋଉ ଡାକୁଛି---

ତୁଷାର—ଯିବି— ( ତୁଷାର ଚାଲିଗଲା )

ଦୁଷ୍ମନ୍ତ—ଟିକେ ଶୁଣି ଯାଅ ମୀର । ବୋଉ କେତେଣେ କଣ କରୁଛି ?

ମୀର—ମୋ ବୋଉ ସାଥିରେ କଥାବାର୍ତ୍ତା ହେଉଛନ୍ତି ?

ଦୁଷ୍ମନ୍ତ—କି କଥା—?

ମୀର—କହୁଛନ୍ତି,—"ମୋ ଝିଅକୁ ଘରକୁ ନେଇଯିବ ।"

ଦୁଷ୍ମନ୍ତ—କାହାକୁ ?

ମୀର—ତାଙ୍କ ଝିଅକୁ ।

ଦୁଷ୍ମନ୍ତ—ମୁଁ ଠିକ୍ ବୁଝି ପାରୁନି, ତାଙ୍କ ଝିଅ କିଏ ?

ମୀର—ମୋ ନୂଆବୋଉ । ତାଙ୍କୁ ନେବାପାଇଁ ଅପଣଙ୍କ ବୋଉ ଆସିଛନ୍ତି ।

ଦୁଷ୍ମନ୍ତ—କୋଉଠିକି ?

ମୀର—ଅପଣଙ୍କ ଘରକୁ ।

ଦୁଷ୍ମନ୍ତ—ତମେ ସ୍ୱପ୍ନ ଦେଖୁନା ତ ?

ମୀର—ସ୍ୱପ୍ନ ଦେଖିବ କାହିଁକି ? ସେଇ କଥାତ ମୋ ବୋଉ ଆଗରେ କହୁଚନ୍ତି ।

ଦୁଷ୍ମନ୍ତ—ତମ ବୋଉ କଣ କହୁଛନ୍ତି ?

ମୀର—ମୁଁ ଜାଣିନି । ଆଚ୍ଛା, ଏଇଟା କଣ ଠିକ୍ ହେଉଛି । ନୂଆ-ବୋଉ ଗଲେ ଆମେ ସବୁ ଚଳିବୁ କିମିତି ?

ଦୁଷ୍ମନ୍ତ—ନୂଆବୋଉଙ୍କୁ ଯିଏ ନବ--ସେ ତମକୁ ଚଳେଇବନି ।

( ବ୍ୟସ୍ତ ହୋଇ ପ୍ରଭା ଆସିଲା )

ପ୍ରଭା— ଆପଣ·········?

ଦୁଷ୍ମନ୍ତ—ବିଶ୍ବାସ କରନ୍ତୁ, ମୁଁ ଏହାର ଖବର କିଛି କିଛି ଜାଣେନା--- । ବୋଉ ମୋତେ କିଛି କହୁନି---

ପ୍ରଭା—କିନ୍ତୁ······ ?

ଦୁଷ୍ମନ୍ତ—ଆପଣଙ୍କ ଶାଶୁ କଣ କହୁଚନ୍ତି ?

ପ୍ରଭା—ସେ କହୁଚନ୍ତି.—"ଛପ ଝିଅକୁ ଘରେ ଘରକୁ ନେବ, ମୋର ଆପତ୍ତି କଣ ।"

ଦୁଷ୍ମନ୍ତ—ଆପତ୍ତି ତେବେ କେବଳ ଆପଣଙ୍କର ?

ପ୍ରଭା—ତାଙ୍କ ମୁହଁକୁ ଅନାଇ ଆପତ୍ତି କରିବାର ଶକ୍ତି ମୋର ନାହିଁ, ସେଇଥିପାଇଁ ଆପଣଙ୍କୁ କହୁଚି ।

ଦୁଷ୍ମନ୍ତ—ମୁଁ ନାଚ୍ଛର । ବନ୍ଧୁର ଦୟାକୁ ଆପଣ ଏଡ଼ ଦେଇଚନ୍ତି ପାରିବେ ଯଦି ମା'ର ଡାକକୁ ଏଡ଼େଇ ଦିଅନ୍ତୁ ।

( ସୁକାନ୍ତ ଆସିଲେ )

ସୁକାନ୍ତ—କୁଆଡ଼େ ଗଲ ମା' ? ଚାଲ, ତୋ ଶାଶୁଠୁ ବିଦାୟ ନେଇ ଆସିଲିଣି । ମୋର ରାଧାମାଧବଙ୍କୁ ପଡ଼ିଏ ଛାଡ଼ି କୁଆଡ଼େ ଯାଏନି । ଆଜି ତୋର ପାଇଁ ତାଙ୍କୁ ଛାଡ଼ି ଆସିଚୁ । ଚାଲ ମା—ଯାହାକୁ ଧନେ ବୋହୁକର ପାଖକୁ ନେଇଥାନ୍ତି—ସେ ଆଜି ମୋ ଝିଅ ହୋଇ ମୋ ପାଖକୁ ଯିବ । ( ତୁଷାର ଆସିଲା )

ଦୁଷ୍ମନ୍ତ—ବୋଉ, ତୁଷାରର ଅନୁମତି ?

ସୁକାନ୍ତ—ମୋ ଝିଅକୁ ନେବାପାଇଁ ମୁଁ ତୁଷାରର ଅନୁମତି ନେଉଚି ? ହିଁ, ଦୁଷ୍ମନ୍ତ । ମୁଁ ଆଜି ମୋ ମା'କୁ ନେଇ ଯାଉଚି । ଗୋଟେ ଷ୍ଟେସନ ମୋ ପାଖରେ ସେ ଏକୁଟିଆ

ରହିବ । ତୁ କାଲି ସକାଳେ ସମସ୍ତଙ୍କୁ ଆମ ଘରକୁ ନେଇଯିବୁ ।

ତୁଷାର—ସମସ୍ତଙ୍କୁ ?

ସୁକାନ୍ତ—ହଁରେ ଦୁଷ୍ମନ୍ତ, ସମସ୍ତଙ୍କୁ । ତାଙ୍କ ଦୋଳିକୁ ମୁଁ ଏକୁଟିଆ ରଖିବନି—କାଲି ସେଇଟି, ତାଙ୍କ ପାଖରେ ଗୁଡ଼ଦେବ । ଚାଲ ମା'—ଗାଡ଼ିକ ଚାଲ-(ଡାକପ୍ରଭମା ଓରି, ପ୍ରଭି ସୁକାନ୍ତଙ୍କୁ ଅନୁସରଣ କଲ— )

ଦୁଷ୍ମନ୍ତ—( ତୁଷାରର ହାତ ଧରି)—ତୁ ଷା ର !

( ଦୁଇ ବନ୍ଧୁଙ୍କ ମୁହଁରେ ଏକ ସ୍ୱର୍ଗୀୟ ହସ ଖେଳଗଲା )

## ପ୍ରଥମ ଅଙ୍କ ସମାପ୍ତ

# ଦ୍ୱିତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( ଅରକ୍ଷଣିବାସର ପ୍ରାଙ୍ଗଣ । ପ୍ରତିଷ୍ଠା ଦିବସ ଉପଲକ୍ଷେ ସଜେଇ— ହୋଇଛି । ନିବାସର କେତେ ଜଣ ବାସିନ୍ଦା ମନ ଆନନ୍ଦରେ ଗୀତ ଗାଉଛନ୍ତି )

### ଗୀତ

ଏଇ ଘର, ଏଇ ଆମ ସଂସାରରେ
ଏଇ ଆମ ଶ୍ରେଷ୍ଠ ବଡ଼ ଦୁନିଆଁ
ଏଥି ଅଛୁ ବାପ, ଅଜା, ଦାଦା ଭାଇ, ମଉସାରେ
ବାହାରର ଅକଳନ କୁଣିଆ ॥
ଜାତି ପାତି ଭେଦ ନାହିଁ— ଧରମ ବାରଣ ନାହିଁ
"ଜୋଲେଖା" ଆଉ "ଜୋନାଥନ୍" ସଭିଏଁ ଭଉଣୀ, ଭାଇ
ଏ ନିବାସ ଆମ ଲାଗି—ରଜାର ଜିଆସରେ
ମନ ଉଠେ ନାହିଁ ଡର ସ୍ଥାନୟାଁ । ୧ ।
ରଜାର ଧରଜା ନୁହିଁ
ସାଜର ଖାତକ ନୁହିଁ
ପାରୁଲ ତାଙ୍କୁ ଆମେ
ଭୁଲିଥିବା ଟେକ ମୁହିଁ
ଏତା ମନେ ଭୁଲିବାରେ ନାମ ଭଲ ଭୁଲିବା
ପାଣି ଫାଟି ପିଇ ଦହ ଢାଲିଆ । ୨ ।

[ ଗୀତ ଶେଷରେ, ବରିଷ୍ଠ ଅନ୍ତେବାସୀମାନଙ୍କ ଗହଣରେ କୁଷ୍ଟି ଓ କୁମାର ଆସିଲେ ]

ଦୁଷ୍ମନ୍ତ—ଆମର ଅନୁରୋଧ ରକ୍ଷା କରି ଆପଣମାନେ ଆଜ ଅରକ୍ଷଣିବାସ୍‌ଟି ଖୋଲି ଦେଖିବାକୁ ଆସିଚନ୍ତି । ସେଥିପାଇଁ ଆମେ କୃତଜ୍ଞ । ମୋ ଜୀବନର ଏକ ବିଶିଷ୍ଟ ଦିନର ଘଟଣା— ମୁଁ ଆଜ ଆପଣମାନଙ୍କୁ କହୁଛି । ସେ ଦିନ ଅଶ୍ୱିନ ମାସ ଶୁକ୍ଳ ତ୍ରୟୋଦଶୀ— ନଈକୂଳ ରାସ୍ତାରେ ଡ୍ରେନ୍‌ରୁ ଗୋଟେ କରୁଣ ସ୍ୱର ଶୁଣାଗଲା । ପାଖକୁ ଯାଇ ଦେଖିଲି— ଜଣେ ଲୋକ—ଅଥର୍ବ, ପଙ୍ଗୁ । ବୁଝିପାରିଲି, ମରିବାପାଇଁ ନର୍ଦ୍ଦମା ଛଡ଼ା ବୋଧେ ଆଉ କୋଉଠି ତାର ସ୍ଥାନ ନ ଥିଲା । ଶରତ୍‌ର ଜହ୍ନ ଆଲୁଅରେ— ଲୋକଟା ମୋ ମୁହଁକୁ ଚାହିଁ ଚାହିଁ ତା'ର ଶେଷ ନିଶ୍ୱାସ ଛାଡ଼ିଲା । ଖାନ୍‌ନଗର ମଶାଣିରେ ତା'ର ଶବ ସତ୍କାର କଲାବେଳେ ମୁଁ ମନେ ମନେ ଭାବୁଥିଲି, ଏଇ ସବୁ ଅନାଥ, ଅରକ୍ଷ ହତଭାଗ୍ୟ ମାନଙ୍କ ପାଇଁ କଣ କିଛି କରିହେବ ନାହିଁ । ମୋର ସେ ଦିନର ସେ ସ୍ୱପ୍ନ ଅତି ସାମାନ୍ୟ ଭାବରେ ହେଲେ ବି ରୂପ ନେଇଛି ଏଇ ଅରକ୍ଷଣିବାସରେ । ଆଉ ମୋର ଅନୁରୋଧ ରକ୍ଷାକରି, ମୋର ବନ୍ଧୁ, ଏଇ ଅରକ୍ଷଣିବାସର ପରିଚାଳକ, ତୁଷାରକାନ୍ତି— ସେଇ ଅଶ୍ୱିନ ଶୁକ୍ଳ ତ୍ରୟୋଦଶୀ— ଅର୍ଥାତ୍ ଆଜ ଦିନଟିକୁ, ଅରକ୍ଷଣିବାସର ଜନ୍ମତିଥି ବୋଲି ମାନି ନେଇଚନ୍ତି ।

ରଙ୍ଗଲାଲ—ଖୁବ୍ ଭଲ କରିଚନ୍ତି—ବୁଝିଲେ ଦୁଷ୍ମନ୍ତବାବୁ, ତୁଷାରବାବୁ ଆପନ୍ ଭୁଲ୍ କରିଛନ୍ତି । ଏତେବଡ଼ ଗୋଟାଏ ମକାନ୍ କିରାୟା ଦେଇଥିଲେ ମାସକୁ ତିନିଶହ ଟଙ୍କା ଭଡ଼ା ଅସୁଲ ହୋଇଥାନ୍ତା—

ଗୋପାଳ— ଓଃ, ଶେଠ୍ ସାହେବ୍— ଆପଣ ଏଠିବି ସେଇ

ବ୍ୟବସାୟୀ ଭାଷାରେ କଥାଭାଷା କଲେ । ଏ କୋଠାକୁ ଭଡ଼ା ଲଗେଇଲେ କେତେ ଟଙ୍କା ଉଠନ୍ତା କି ଷ୍ଟୋର-ଗୋଦାମ ଖୋଲିଲେ କେତେ ଫାଇଦା ହୁଅନ୍ତା—ସେ ପ୍ରଶ୍ନ ଏଠି ଉଠୁଛି କାହିଁକି ? ଏଠି ଅରକ୍ଷଣୀବାସ ଖୋଲା ହୋଇଛି, ଆପଣ ଦୟାକରି ଏଠି ଆପଣଙ୍କ ପାଦ ଧୂଳି ଦେଇଚନ୍ତି— ସେ ବିଷୟରେ ଯାହା କହିବାର କଥା କୁହନ୍ତୁ । ଏଠି ଆସି କଣ ଦେଖିଲେ କଣ ନ ଦେଖିଲେ—

ରଙ୍ଗଲାଲ—ଆରେ ହାମେତ ସେଇ କଥା କହୁଛ । ଏତେ ବଡ଼ ମକାନ୍‌ରେ——ଏ ସବୁ କଣ କରୁଛନ୍ତି ଆପଣମାନେ ? ହଁ, ଅରକ୍ଷ—ଅନାଥ ଲୋକ ସବୁ ଆସି ଖାଇ ପିଇ ଆଶ୍ରମରେ ରହିଲେ—ଏ କଣ କମ୍ କଥା ଅଛି ?

ତୁଷାର—ଏଥିପାଇଁ ଏକା ଦୁଷ୍ମନ୍ତର ଦାନତ ନୁହେଁ—ଆପଣ ମାନଙ୍କର ସାହାଯ୍ୟ ମଧ୍ୟ ଆମେ ପାଇଛୁ । ଅରକ୍ଷଣୀବାସ ତରଫରୁ ମୁଁ ଆପଣମାନଙ୍କୁ ପୁଣି ଥରେ କୃତଜ୍ଞତା ଜଣାଉଛି ।

ରଙ୍ଗଲାଲ—ନେହିଁ ନେହିଁ—ତୁଷାର ବାବୁ, ଆମେ ଆଉ କ'ଣ ଦେଲୁ । ଦୁଷ୍ମନ୍ତ ବାବୁ ଲାଖ୍ ଲାଖ୍ ରୁପିୟା ପାଣିକି ଫିଙ୍ଗିଦେଲେ—

ଗୋପାଳ—ଦେଖୁଚ, ପୁଣି ସେଇ କଥା । ପାଣିକି ଫିଙ୍ଗିଦେଲେ ! ଅରକ୍ଷଣୀବାସକୁ ଦାନ କରିବା ମାନେ ପାଣିକି ଫିଙ୍ଗିଦେବା ?

ରଙ୍ଗଲାଲ—ଆହା··· ତୁମେ ଗଲତ ବୁଝିଲ ଗୋପାଲ ବାବୁ । ଦୁଷ୍ମନ୍ତ ବାବୁ ଯାହା କରିଛନ୍ତି ସେଥିରେ ତାଙ୍କର

ନିଜର ସୁଆର୍ଥ ଏତ ପାତୁଳ ତର ଭି ନାହିଁ—କ୍ୟୁଁ ଜ ଖାଁ ସାହେବ—ଠିକ୍ ହେ ନା ?

ଜମାଲ—ବିଲକୁଲ୍ ଠିକ୍ ହେ । ସେଇ ଗୋପାଳ ବାବୁଙ୍କ କଣ ମାଲୁମ୍ ନାହିଁ ।

ଗୋପାଳ—ଗୋପାଳ ବାବୁଙ୍କୁ ଆଉ ସାକ୍ଷୀ ମାନୁଛନ୍ତି ଭାଇଁବି—? ଗୋପାଳବାବୁ ବର୍ତ୍ତମାନ ଠିକ୍ କଥା ବୁଝି ପାରିଲେଣି । ଦୁଷ୍ମନ୍ତବାବୁ ବିନା ସ୍ୱାର୍ଥରେ ଲକ୍ଷ ଲକ୍ଷ ଟଙ୍କା ଦାନ କରନ୍ତି । କିନ୍ତୁ ଆପଣମାନେ ଏ ଦାନ ଯଜ୍ଞରେ ହଜାରେ ଧ' ହଜାରେ ଟଙ୍କା ପକେଇ ଲକ୍ଷେ ଟଙ୍କାର ସ୍ୱାର୍ଥ କିଣି ନେଉଛନ୍ତି ।

ଜମାଲ୍—କ୍ୟା ମତଲବ୍ ?

ଗୋପାଳ—ମତଲବ୍ ହେଉଛି—ଆପଣମାନେ ତ ସାରା ଅରକ୍ଷନିବାସଟା ବୁଲି ଆସିଲେ, କୋଉଠି ଦେଖିଲେକି ଅରକ୍ଷନିବାସର ବାସିନ୍ଦାମାନେ କେବଳ ବସି ବସି ଅନ୍ନ ଧ୍ୱଂସ କରୁଛନ୍ତି ? କୁହନ୍ତୁ ପୁଷ୍ଟିବାବୁ ?

ଅବନୀ—ଏଇ ସବୁ ଆଲୋଚନା ନହେଲେ, ବୋଧେ ଗୋପାଳ ବାବୁଙ୍କ ମନ ତୃପ୍ତି ହୁଏନି ।

ଗୋପାଳ—କ୍ଷମା କରନ୍ତୁ ଅଜ୍ଞା—ଆଜି ଅରକ୍ଷ ନିବାସର ଜନ୍ମ ତିଥି ପାଇଁ ଆନନ୍ଦ ଉତ୍ସବର ଆୟୋଜନ ହେଉଛି ବୋଲି ଶୁଣୁଛି । ଧରନ୍ତୁ—ଏଇଟା ତା ପୂର୍ବାଭାସ । ହଁ କୁହନ୍ତୁ ପୁଷ୍ଟିବାବୁ ?

ପୁଷ୍ଟି—ହଁ ଦେଖିଲୁଛ । ନିଜର ଶକ୍ତି ସାମର୍ଥ୍ୟକୁ ବୁଝି କିଏ ମାଟି କାମ କରୁଛି—କିଏ ସୂତା କାଟୁଛି—କିଏ ଲୁଗା ବୁଣୁଛି ।

ଗୋପାଳ—ଅଚ୍ଛ ସେଇସବୁ ଜାଗାମାନଙ୍କରେ ଏତେ ବଡ଼ ବଡ଼ ଅକ୍ଷରରେ ଯାହା ସବୁ ଲେଖା ହୋଇଛି ?

ରଂଗଲାଲ—କ୍ୟା ମତଲବ୍ ?

ଗୋପାଳ—ମତଲବ୍ ହଉଛି, "ରଂଗଲାଲ ବସ୍ତ୍ର ଶିଳ୍ପ ଭଣ୍ଡାର" 'ଜଲାଲ୍ ଜର୍ଜିନ ପାଦୁକା ଭଣ୍ଡାର'—'ପୃଥ୍ବୀ ହସ୍ତ ଶିଳ୍ପ ଭଣ୍ଡାର'—'ବୁଲକଙ୍କି ଲୌହକର୍ମ ଭଣ୍ଡାର' ।

ରଂଗଲାଲ—ସଚ୍ ? ତୁଷାର ବାବୁ ?

ତୁଷାର—ହଁ ଅଙ୍ଗ-ଅରକ୍ଷଣବାସକୁ ଯେଉଁମାନେ [illegible] ଦେଇଛନ୍ତି, ସେମାନଙ୍କର ନାମ ଅନୁସାରେ ଗୋଷ୍ଠ ଗୋଟିଏ ଭଣ୍ଡାର ଖୋଲାଯାଇଛି ।

ଗୋପାଳ—କିନ୍ତୁ ଭୋଜଟି ଦେଖିଲେ କ ତୁଷାର ବାବୁ କ ତାଙ୍କର କେହୁ ବନ୍ଧୁ, ବାନ୍ଧବ ବା ଆତ୍ମୀୟ ସ୍ୱଜନ ନାମରେ କୌଣସି ଭଣ୍ଡାର ଖୋଲା ଯାଇଛି ! ମୁଁ ସେଥିପାଇଁ କହୁଥିଲି, ଯେ ଆପଣ ଯାହା ଦାନ କରିଛନ୍ତି, ତାର ବହୁଗୁଣରେ ନିଜର ଫାଇଦା ଉଠେଇ ନେଇଛନ୍ତି ।

ରଙ୍ଗଲାଲ—ଲୁଁ ଜ ଖାଁ ସାହେବ, ଗୋପାଳବାବୁ କ୍ୟା କହତେ ହେଁ ?

ଜଲାଲ—ଠିକ୍ କହତେ ହେଁ, ଲେକିନ………

ଗୋପାଳ—ଆଉ ଲେକିନ୍ କ'ଣ ?

ରଙ୍ଗଲାଲ—ଲେକିନ୍ ତୁଷାର ବାବୁ ! ଗୋପାଳ ବାବୁଭି ଅରକ୍ଷଣବାସ ପାଇଁ ବହୁତ କାମ କରିଛନ୍ତି । ତାଙ୍କ ନାଁରେ ଗୋଟେ ଭଣ୍ଡାର ହଉ ।

ଜଲାଲ—ଠିକ୍ ହେ, ଠିକ୍ ହେ ।

ଗୋପାଳ—ହଲ୍ ଭୁଲ ଭୁଲ୍ ହୋଗି । ମୋ ନାଁରେ ବଭ୍ରଗ ରହିବ ।

ଜଙ୍ଗଲ—କ୍ୟା ମତଲବ୍ ?

ଗୋପାଳ—ମତଲବ୍ ହଉଛି, ମୁଁ ଟଙ୍କା ନ ଦେଲେ ମୋ ନାଁରେ ବଭ୍ରଗ ରହୁଛି—"ଗୋପାଳ ପ୍ରଧାନ ଠେଙ୍ଗା ବଭ୍ରଗ ।" ସେଠି ଖାଲି ପୁରୁଷେ ଜଗର ଚଣ୍ଡା ବାଇଶ ଠେଙ୍ଗା ଛଆର ହଉଛି । (ସମସ୍ତେ ହସି ଉଠିଲେ)

ଅବମା—(ଅନ୍ୟକୁ ଲକ୍ଷକରି) ଏ କିଣ, ବୋଉ ମଧ୍ୟ ଆଜି ଆସିଚନ୍ତି ।

ଦୁଷ୍ମନ୍ତ—ହଁ, ଅରଣନିବାସ ପ୍ରତିଷ୍ଠା ହେବା ଦିନଠୁଁ ବୋଉ ଆଜି ଏଇ ପ୍ରଥମ ଥର ଏଠିକି ଆସିଛନ୍ତି ।

ଅବମା—ସାଙ୍ଗରେ କିଏ, କ୍ଷଣପ୍ରଭା ଦେବୀ ?

ଦୁଷ୍ମନ୍ତ—ହଁ, କ୍ଷଣପ୍ରଭା ଦେବୀ ଆଉ ମୀର ।

ରଙ୍ଗଲାଲ—କ୍ୟା ହୋ, କ୍ୟା ହୋ—

ଗୋପାଳ—ଦୁଷ୍ମନ୍ତ ବାବୁଙ୍କ ମା' ଆସୁଚନ୍ତି ?

ରଙ୍ଗଲାଲ—ଓ ! ............

(ସୁକାନ୍ତ, କ୍ଷଣପ୍ରଭା, ମୀର ଆସିଲେ । କ୍ଷଣପ୍ରଭା ଦାମିକା ଶାଢ଼ୀ ଓ ବହୁ ମୂଲ୍ୟବାନ ଅଳଙ୍କାର ପିନ୍ଧିଛି । ମୀରର ବେଶଭୂଷାରେ ମଧ୍ୟ ପରି-ବର୍ତ୍ତନ ଦେଖାଦେଉଛି । )

ଦୁଷ୍ମନ୍ତ—ସବୁ ବୁଲି ଦେଖିଲୁ ତ ବୋଉ ?

ସୁକାନ୍ତ—ହଁ

(ଏତିକିବେଳେ ପରିସ୍ଥାର ଲଗାପରି କିଛି ଗୋଟିଏ ଝିଅ ଓ ଦୁଇଟି ପୁଅ ଆସିଲେ । କାହାରି ବୟସ ଆଠ ନଅ ବର୍ଷରୁ ବେଶି ନୁହେଁ)

ଗୋପାଳ—ଏ ପିଲା ତିନୋଟିକୁ ଚିହ୍ନିଲେ ତ ମା' ?

ସୁକାନ୍ତ—ନା, ଭ ।
ଗୋପାଳ—ଏ ପିଲେ, ତମ ନାଁ କୁହ ?
ଜୋଲେଖା—ମୋ ନାଁ ଜୋଲେଖା ।
ଜୋନାଥନ୍—ମୋ ନାଁ ଜୋନାଥନ୍ ।
ଗୋବନ୍ଦ—ମୋ ନାଁ ଗୋବନ୍ଦ ଚନ୍ଦ୍ର ।
ଗୋପାଳ—ଗୋଟିଏ ମୁସଲମାନ, ଗୋଟିଏ ହିନ୍ଦୁ, ଆଉ ଏଇଟି ଖ୍ରୀଷ୍ଟିଆନ୍ । ଏଇଟି ହଜରତ ଦୁଷ୍ମନ୍ତ ବାବୁଙ୍କ ଝିଅ, ଏଇଟି ଜୁଷାର ବାବୁଙ୍କ ପୁଅ, ଏଇଟି ହଜରତ ଷଷ୍ଠପ୍ରଭା ଦେବୀଙ୍କ ପୁଅ ।
ସୁକାନ୍ତ—ହୁଁ !
ଗୋପାଳ—ପିଲା ଉତେୋଟି ଏମାନଙ୍କୁ ଠିକ୍ ନିଜର ବାପ ମା'ପରି ଆଦର ଯାଇଚନ୍ତି ।
ସୁକାନ୍ତ—(ଷଣପ୍ରଭାକୁ) ମୋଟରେ ଏଠି କେତେ ଜଣ ଅଛନ୍ତି ମା ?
ପ୍ରଭା—ଷଣ୍ଢେ ଏଗାର ଜଣ ।
ସୁକାନ୍ତ—ହୁଁ । (ଗୃହଗଲେ)
ପ୍ରଭା—ମୀର, ତମେ ବୋଉଙ୍କ ସାଥିରେ ଯାଅ, ମୁଁ ପଛରେ ପାଉଛି ।
( ମୀର ଓ ପିଲମାନେ ଗୃହଗଲେ )
ଦୁଷ୍ମନ୍ତ—ବୋଉ କ'ଣ କହୁ କହୁଥିଲା ?
ପ୍ରଭା—କେବେ ଭଲା ବୋଉ କଥାରେ ସେ କହୁ କହନ୍ତି ।
(ସମସ୍ତଙ୍କୁ ଉଦ୍ଦେଶ୍ୟ କରି) ହଁ, ଆପଣମାନେ ଟିକେ ଦୟାକରି ବସନ୍ତୁ ।
ଗୋପାଳ—କ'ଣ ନ ଭୃତ୍ୟଗୀତର ଆୟୋଜନ ଭ ?
ପ୍ରଭା—ଆଜ୍ଞା—
ଗୋପାଳ—ଆପନୁ ଷେଠ୍ ସାହେବ, ସବୁଦଳେ ମଞ୍ଚ ଆଉ

ଦର୍ଶାରେ ଅପ୍‌ସରାମାନଙ୍କ ନୃତ୍ୟଗୀତ ଦେଖୁଥିଲେ ।
ଆଜି ଏଠି ଏଇ ଅପ୍‌ସରାମାନଙ୍କୁ ଦେଖନ୍ତୁ ।

( ନୃତ୍ୟ ଶେଷ ହେଉଥିବେଳକୁ ଦେଖାଗଲା କେବଳ ତୁଷାର, ଦୁଷ୍ମନ୍ତ, ସଣ୍ଡୁଭା ଓ ଗୋପାଳ ଛଡ଼ା ଅନ୍ୟମାନେ ବିଦାୟ ନେଇଛନ୍ତି )

ଗୋପାଳ—ହୁଁ, ଶେଠ୍ ସାହୁକାର ମାନେବି ବିଦାୟ ନେଲେ— ଅ...ଷ...ସର ତୁଳ୍ଳିତ ଅବସ୍ଥାରୁ ସେମାନଙ୍କୁ ଜଣେଇ ଦିଆଗଲା ନାହିଁ ।

ତୁଷାର—ଆଜି, ଏଇ ଉତ୍ସବ ଦିନରେ ସେମାନଙ୍କ ସନ୍ତୋଷ କୌଣସି ଆଲୋଚନା ହୋଇପାରିବ ନାହିଁ ବୋଲି ଆମେ ଠିକ୍ କରିଥିଲୁ ।

ସଣ୍ଡୁ—କିନ୍ତୁ କେତେଦିନ ଆମେମାନେ ଏ ଅବସ୍ଥାରେ ଏ ଅନୁଷ୍ଠାନକୁ ବଞ୍ଚାଇ ରଖିପାରିବା ? ଆରମ୍ଭ ହେବାର ମାସ କେଇଟା ମଧ୍ୟରେ ବାହାରୁ ଆଉ ଗୋଟିଏ ପଇସାର ସାହାଯ୍ୟ ଆସୁନି, ଅଥଚ ଏଣେ ସଂଖ୍ୟା ବଢ଼ି ଗ୍ଲଲିଛି । ଆହୁରି ବଢ଼ିବ । ଏ ସମସ୍ୟା ଚିରଦିନ ଥିଲା— ଚିରଦିନ ରହିବ । କିନ୍ତୁ ଚିରଦିନ ଆମର ଶକ୍ତି ସାମର୍ଥ୍ୟ ବା ଉତ୍ସାହ ରହିବ ନାହିଁ । ସେଇଥିପାଇଁ ମୁଁ ଚାହୁଁଛି, କେବଳ ଆଜି ୨ ସର୍ବସାଧାରଣଙ୍କ ହାତକୁ ଏହାର ଦାୟିତ୍ୱ ଟେକି ଦେବା ମଙ୍ଗଳ ।

ଦୁଷ୍ମନ୍ତ—ସର୍ବସାଧାରଣ !

ତୁଷାର—ମୁଁ ଗୋଟେ କଥା ଭାବୁଛି ।

ଗୋପାଳ—କଣ ?

ତୁଷାର—ଆମେ ଆଜି ଆମ ନିବାସର ଅପ୍‌ସରା ସଂଖ୍ୟା ବଢ଼ାଇବା ନାହିଁ । ଏଇ କେତେଜଣଙ୍କୁ ନେଇ ଯେ କୌଣସିମତେ

ଅବାସଟିକୁ ଚଳାଇ ନବାକୁ ହେବ । ଏଣିକି ଯିଏ ନୂଆ ଆସିବ, ସେ ଫେରଯିବ । ତା ପାଇଁ ଏଠି ଆଉ ସ୍ଥାନ ନାହିଁ । ତା ହେଲେ ଲୋକେ ବାଧ୍ୟହୋଇ ଆଉ ନୂଆ ନୂଆ ଅନୁଷ୍ଠାନ ଖୋଲିବେ ।

ଦୁଷ୍ମନ୍ତ—କିନ୍ତୁ ତୁଷାର, ଏଥିରେ ତମ ଆଦର୍ଶ ବଞ୍ଚିବ କିପରି ? ଲୋକେ ଯଦି ଅନୁଷ୍ଠାନ ନ ଖୋଲନ୍ତି, ତେବେ ପୁଣି ସେ ଧନ ସନ୍ଧ୍ୟା ଭଳି ଗ୍ରସ୍ତାଇଳ ନର୍ଦ୍ଦମାରେ ଏମାନଙ୍କ ମଲା ଦେହ ଦେଖିବାକୁ ମିଳିବ । କାଲି ଯଦି କେହି ପଙ୍ଗୁ, ଅକ୍ଷମ, ଘରଛଡ଼ା ପଞ୍ଜରା ହାଡ଼ ଦେଖାଇ ତମ ପାଖରେ ହାତପାତି ଆସି ଠିଆ ହୁଏ, ତେବେ ତୁମେ କେଉଁ ସାହସରେ ତାକୁ ଏଠୁ ଜବରଦସ୍ତ ଫେରାଇଦେବ ? ଫେରଯାଇ ସେ କରିବ କଣ—ରହିବ କେଉଁଠି ?

( ଦୁଷ୍ମନ୍ତର ସ୍ୱର ଭାଙ୍ଗିଛି )

ପ୍ରଭା—ଦୁଷ୍ମନ୍ତବାବୁ !

ଦୁଷ୍ମନ୍ତ—ନା ପ୍ରଭା ଦେବୀ, ମୁଁ ପାରୁନି । ଏ ଦୃଶ୍ୟର କଳ୍ପନା ମୁଁ କରିପାରୁନି । କେଉଁଠି ସ୍ଥାନ ନ ପାଇ ଯିଏ ଏଠିକି ଆସିଲା, ତାକୁ ପୁଣି ଫେରାଇଦବା କେଉଁଠିକି ??

ତୁଷାର—ତା ହେଲେ, କୁହନ୍ତୁ ଗୋପାଳ ବାବୁ ଆମେ କରିବା କଣ ? କ୍ଷଣପ୍ରଭା ଯାହା କହିଲେ, ସେଇ ସର୍ବସାଧାରଣଙ୍କ୍ କ'ଣ ଆମର ଭରସା ?

ଗୋପାଳ—କିନ୍ତୁ ଏ କ୍ଷେତ୍ରରେ ସର୍ବସାଧାରଣ ମାନେ ଦେଶର ଧନୀ ଲୋକେ ତ ? କେତେଜଣ ଧନୀ ଆପଣଙ୍କର ଏ ଆଦର୍ଶରେ ଅନୁପ୍ରାଣିତ ହୋଇ ଆଗେଇ ଆସିବେ ? ଆରେ ବାବୁ, ଯାହାର ଅଛି—ସିଏ ସବୁଦିନେ 'ଅଛି'ର

ମିଠା ଗୁଣ୍ଡି ଅସଂଖ୍ୟ । ସେ ଭଲ ଭାବୁକ ନିଜର ହାତ ମୁଠା ଖୋଲି ଆଗେଇ ଆସିବ ? ସେଇଥିପାଇଁ ଆମର ଏ ନୂଆ ମନ୍ତ୍ର ହେଉ— ଯାହା ଅଛି, ତା'ର ଧ୍ୱଂସ, ତାର ପାଉଁଶ ଉପରେ ହେବ ନୂତନର ଜନ୍ମ । ଲୋକେ ଯଦି ନିଜେ ନିଜର ସ୍ୱାର୍ଥ ଛାଡ଼ିବାକୁ ଆଗେଇ ନ ଆସନ୍ତି ତେବେ ··· ଜୋର କରି ତାଙ୍କର ସ୍ୱାର୍ଥ ତାଙ୍କଠୁ ଛଡ଼େଇ ଆଣିବାକୁ ହେବ । ଏଠି ସମସ୍ତଙ୍କର ସ୍ୱାର୍ଥ ହେବ ସମସ୍ତଙ୍କର ସ୍ୱାର୍ଥ । ଦେଶରେ ଯେତେ ଅପାରଗ, ଅକ୍ଷମ ଅଛନ୍ତି ସେ ସମସ୍ତଙ୍କୁ ବଞ୍ଚାଇ ରଖିବାର ଦାୟିତ୍ୱ ହେଉଛି ଦେଶର, ଜାତିର, ସମାଜର, ସର୍କାରର ।

ଦୁଷ୍ମନ୍ତ—ତା ହେଲେ କ'ଣ ଏ ଧ୍ୱଂସର ଗତିକୁ କେହୁ ଏଡ଼ ଦେଇ ପାରିବନି ?

ଗୋପାଳ—ତୁଷାର ବାବୁ ଚିନ୍ତାଶୀଳ ଲୋକ—ଏ ପ୍ରଶ୍ନର ଉତ୍ତର ସେଇ ଦିଅନ୍ତୁ । ମୁଁ ବର୍ତ୍ତମାନ ଆସୁଛି, ନମସ୍କାର ।

( ପ୍ରସ୍ଥାନ )

ଦୁଷ୍ମନ୍ତ—ତୁଷାର ··· ···

ତୁଷାର—ଝଂଝା ଯଦି ଧ୍ୱଂସକୁ ଡାକି ଆଣେ—ତେବେ—ତେବେ ନା ଦୁଷ୍ମନ୍ତ, ଏ ପ୍ରଶ୍ନର ଉତ୍ତର ମୁଁ କିଛି ଦେଇ ପାରୁନି— ମୁଁ ଭାବୁଛି, ମୁଁ ସର୍କାରଙ୍କୁ ସାହାଯ୍ୟ ପାଇଁ ନିବେଦନ କରିବି

ଦୁଷ୍ମନ୍ତ—ବେଶ୍ ତୁ ଆବେଦନ କର୍ । ମୋର ପନ୍ଥା ଭିନ୍ନ । ମୁଁ ଷଣ୍ଢପ୍ରଭୁଙ୍କ ସାହାଯ୍ୟ ଲୋଡ଼େଁ--

ଶୁଭ୍ର—ମୋର ସାହାଯ୍ୟ ?

ଦୁଷ୍ମନ୍ତ—ହଁ, ତମେ ଯାଅ ତାଙ୍କ ପାଇ ଦେଖିବ ଧର୍ମମାନଙ୍କ ଦୁଆରେ ଅରଣ୍ୟବାସ ପାଇଁ ହାତ ପାତି ଭିକ୍ଷା ମାଗିବ ।

ପ୍ରଭା—କିନ୍ତୁ........ ?

ତୁଷାର—ତମେ ଯାଅ ପ୍ରଭା, ଚେଷ୍ଟାକର । ଯଦି ସେମାନଙ୍କ ମନକୁ ଛୁଇଁ ପାର, ସେମାନଙ୍କୁ ଅନୁପ୍ରାଣିତ କରିପାର, ତେବେ ହୁଏତ ଆମର ଅଭାବ ରହିବ ନାହିଁ ।

ପ୍ରଭା—କିନ୍ତୁ ଏ ଚେଷ୍ଟା ମୁଁ କାହିଁ କରି ତୁମେ ଦୁହେଁ କି କରି ପାରନ୍ତ ?

ତୁଷାର—ଆମେ ଚେଷ୍ଟା କରିବୁ ପ୍ରଭା, ଅନେକ ଦ୍ୱାର ଦ୍ୱାର ବୁଲି ମାଗିବୁ । କିନ୍ତୁ ତୁମକୁ ମଧ୍ୟ ଯିବାକୁ ହେବ । କାରଣ......

ପ୍ରଭା—କାରଣ ?......

ତୁଷାର—ନାରୀର ଆବେଦନ ବିଫଳ ହୁଏନା !

ପ୍ରଭା—ଏଁ...... ?

ଦୁଷ୍ମନ୍ତ—ତୁଷାର ଠିକ୍ କହୁଛି ପ୍ରଭାଦେବୀ—ନାରୀର ଆବେଦନ କେବେ ବିଫଳ ହୁଏନା ...... (ପ୍ରସ୍ଥାନ)

ତୁଷାର—ଦୁଷ୍ମନ୍ତ......ଦୁଷ୍ମନ୍ତ...... ।

ପ୍ରଭା—ସେ ବୁଲିଗଲେଣି ।

ତୁଷାର—ଓ, ପ୍ରଭା !

ପ୍ରଭା—କ'ଣ— (ପ୍ରଭା ତୁଷାରର ହାତ ଧରିଲା) ବୁଝି ପାରୁଚ ତ ? ହାତରେ, ବେକରେ, କାନରେ ଦହୁଡ଼ି ପିନ୍ଧିଛ ଦାମୀ ଦାମୀ ଗହଣା, ଦେହରେ ଦାମିକା ଶାଢ଼ୀ । ଅଂଧ ଗଳାର ତୁଷାରକାନ୍ତର ସ୍ତ୍ରୀ କ୍ଷଣପ୍ରଭା, ଆଜ ସେ କ୍ଷଣପ୍ରଭା ହୋଇନାହିଁ । ସେ ସୁନା ଜହରତ୍‌ରେ ଝଲକୁଛି । ଶାଶୁଙ୍କ

ମରିବା କାହିଁ କେତେଥର ହୋଇଗଲା ! ଗୋଟାଏ ସ୍ୱପ୍ନ ପରି ତାଙ୍କୁ ଭୁଲି ଯିବାକୁ ବସିଲିଣି । ମା'ର ଦାବୀ ଦେଖାଇ ଗୋଟାଏ ସୂତା ପାଇଁ ଏତିକ ଅଣି, ଅକପଟ ସ୍ନେହ, ମମତା ଏବଂ ସଙ୍ଗେ ଧନ ଦଉଲତର ନିଗଡ଼ ଭିତରେ ମତେ ବାନ୍ଧି ରଖିଲେ । ନିଜ ହାତରେ ମୋ କାନରେ ବାନ୍ଧିଦେଲେ ଭଣ୍ଡାର ଘର ଚାବି । ଯାହି ଫିଟେଇବାର ଜୁ ବହୁଲ ନାହିଁ । ଆଜି ଇଷ୍ଟପତି ଓକିଲ ଦୁଷ୍ମନ୍ତଙ୍କ ଘରର ଗୃହିଣୀ ତାଙ୍କ ମା' ସୁକାନ୍ତ ନୁହନ୍ତି— ଗୃହିଣୀ ମୁଁ, ତାଙ୍କ ବାଜବୀ-ଷଣ୍ଡସ୍ତ୍ରୀ । ଲୋକେ ଏ କଥା ଜାଣିଲେ, ଶୁଣିଲେ । ମନେ ମନେ ଭୁଲି ହୋଇ ରହିଲେ । ହାତରେ ମୋର ସୁନାର ବେଡ଼ି ପିନ୍ଧିବାର ବାଟ କାହିଁ ? କିନ୍ତୁ ଏ ପୁଣି ତୁମେ କଣ କରୁଛ ? ପୁଣି ଏ ତ୍ୟାଗର ବନ୍ଧନ—ଆଦର୍ଶର ବେଢ଼ିରେ ମତେ ବାନ୍ଧି ରଖୁଛ ?

ତୁଷାର—ତ୍ୟାଗ କେବେ ବନ୍ଧନ ହୋଇ ପାରେନା ପ୍ରଭା । ମୁଁ ଯେ ତୁମକୁ ଚାହୁଁଛି—ମୋର ଜନ୍ମ ଏଇ ଅଭାବୀମାନଙ୍କ ସେବା କରିବା ପାଇଁ । ଆମର ଲକ୍ଷ୍ୟ ହେଲା ସେବା ! ଆମର ଆଦର୍ଶ ହେଲା ତ୍ୟାଗ । ତୁମକୁ ଆଗେଇ ଯିବାକୁ ହେବ ପ୍ରଭା । ଅରକ୍ଷଣବାସଙ୍କୁ ବଞ୍ଚାଇ ରଖିବା ପାଇଁ ତୁମକୁ ଦ୍ୱାର ଦ୍ୱାର ବୁଲି ଭିକ୍ଷା ମାଗିବାକୁ ହେବ ।

ପ୍ରଭା—ନା—ନା—ମୁଁ ପାରିବିନି—

ତୁଷାର—ତୁମେଇ ପାରିବ ପ୍ରଭା—ତୁମେଇ ପାରିବ—ତୁମେ ଯାଅ

ମୁଁ ଯାହା ଭଦ୍ରଶ-ନାରୀର ଅବେଦନ ବିଫଳ ହୁଏ ନାହିଁ । ତୁମେ ଯାଅ ।

(କହୁ କହୁ ଚାଲିଗଲା)

( ତୃତୀୟ ଦୃଶ୍ୟ—ମଞ୍ଚ ସମ୍ପୂର୍ଣ୍ଣ ଅନ୍ଧକାର । ଝଙ୍କାରର ଏକ ଉଚ୍ଛଳ ଯନ୍ତ୍ର ସଙ୍ଗୀତର ସ୍ୱର ପରିସ୍ଥିତିକୁ ଆହୁରି ଗୁରୁତର କରିଦେଲା । କିଛି ସମୟ ପରେ କ୍ଷୀଣ ଆଲୋକ ଜଳି ଉଠିଲା—ପଶ୍ଚାତ୍‌ଭୂମିରେ କଳା ପର୍ଦ୍ଦା । ଅତି ସନ୍ତର୍ପଣରେ ଏକ ପୁରୁଷର ଛାୟାମୂର୍ତ୍ତି—କଳା ପର୍ଦ୍ଦା ଅନ୍ତରାଳରୁ ବାହାରି ଆସିଲା । ସେ ଆସି କିଛି ସମୟ ଅସ୍ଥିର ହୋଇ ପଦଚାରଣ କଲା ପରେ ବିପରୀତ ଦିଗରୁ ଏକ ନାରୀମୂର୍ତ୍ତି ଆସିଲା । ଆଲୋକ ଜଳି ଉଠିଲା ପରେ ଦେଖାଗଲା ପୁରୁଷଟି ହେଉଛି ରଙ୍ଗଲାଲ ଓ ନାରୀଟି ହେଉଛି କ୍ଷଣପ୍ରଭା । ପ୍ରଭା ସୁସଜ୍ଜିତା )

ରଙ୍ଗଲାଲ—ଆଇଏ ଦେବୀଜୀ, ଆଇଏ, ଆଇଏ ।

ପ୍ରଭା—ମୁଁ କିଛି ବୁଝି ପାରୁନି ରଙ୍ଗଲାଲ ବାବୁ ! କାଲିତ ଦୋକାନରୁ ଫେରେଇ ଦେଲେ, ଆଜି ପୁଣି ଆପଣଙ୍କ ଚିଠି ପାଇଲି ଏଠି ଆସି ଦେଖା କରିବାକୁ । ଏ କିସେଲା ଢାଗାଠା........?

ରଙ୍ଗଲାଲ—ଆପଣ ପିଲାଲୋକ ପ୍ରଭାଦେବୀ । ସେ ଗୁମର ଆପଣ ବୁଝିପାରିବେନି । ଦୋକାନରେ ମୋର ଭାଇ ଅଛି, ପୁଅ ଅଛି, ପୁତୁରା ଅଛି । ସେଠି ଆଜ ଆପଣଙ୍କୁ କେତେ ରୁପା ଦେବି । ଏଇ ପାଁଚଶହ କି—ଏକ୍ ହଜାର । ଦେଖି ଦେଲେ ସେମାନେ ମୋତେ ସନ୍ଦେହ କରିବେ !

ପ୍ରଭା—ଓ......ସେଇଥିପାଇଁ ତା ହେଲେ !! ଅଚ୍ଛା ଦିଅନ୍ତୁ, କେତେ ଦେବେ । ମୋ ମନକୁ ନ ପାଇଲେ କିନ୍ତୁ ମୁଁ ମୋଟେ ନେବିନି ।

ରଙ୍ଗଲାଲ—କମା ମନକୁତ ଆପଣ ହୋଇଲାଇ ହେଲଣି ପ୍ରଭୁଦେବୀ, ମୁଁ ପୁଣି ଆପଣଙ୍କ ମନକଥା ବୁଝିବନା ? ( ଦୀର୍ଘ ନିଶ୍ୱାସ ମାର ) ହାୟ୍, ହାୟ୍, ପ୍ରଭୁଦେବୀ !

ପ୍ରଭୁ—ଧଅନ୍ତୁ···ଏଇ ହାତଏତ ମାଗୁଛି ।

ରଙ୍ଗଲାଲ—ଏଇ ହାତ୍···· ·ଏଇ ହାତରେ ଦେବ ?

ପ୍ରଭୁ—ହଁ ।

ରଙ୍ଗଲାଲ—(ନୋଟ ବଣ୍ଡାଏ ପକେଟରୁ ବାହାର କର ପ୍ରଭୁ ହାତରେ ଧରେଇ ଦେଇ, ପ୍ରଥମେ ଡର ଡର ପରେ ସାହାସ ସହକାରେ ନୋଟ ସହ ପ୍ରଭୁ ହାତକୁ ନିଜ ହାତମୁଠାରେ ରଖି ) ହାୟ୍, ଭଜରଙ୍ଗବଲୀ—ଏତ ହାତ ନୁହେଁ ସୁନାର ପଦୁଅ ଅଛୁ ।

ପ୍ରଭୁ—( ହସି )—କେଜାଣି ଶେଠ୍‌ଜୀ ! ଭାଙ୍ଗିରୀ ଭାଠି ଚୁଇଁଲା ପର ଆପଣଙ୍କ ହାତଲାଗି ମୋ ହାତ ଯେବେ ସୁନାପଦୁ ହେଇ ଯାନ୍ତା—ତେବେ ଆଜ ଗୁନା ପାଇଁ ମୋତେ ଘେରିବଣୀ ଧାଇବାକୁ ପଡ଼ନ୍ତା ନାହିଁ-- । ହାତଟା ଏଥର ଛାଡ଼ନ୍ତୁ—କେତେ ଦେଲେ ?

ରଙ୍ଗଲାଲ—ପାଞ୍ଚ ହଜାର—

ପ୍ରଭୁ—ମୋଟେ ପାଞ୍ଚ ହଜାର ?

ରଙ୍ଗଲାଲ—କୁଲ୍, ଏକ୍ ହାତ୍‌କା କମତ ।

ପ୍ରଭୁ—ଓ,ଗୋଟେ ହାତ ପାଇଁ ପାଞ୍ଚ ହଜାର । ମୁଁ ଜାଣି ନ ଥିଲି । ( ଟଙ୍କା ବ୍ୟାଗରେ ରଖି ) ଏଇ, ଏଥର ଦ'ହାତ ପାତିଲି— ଧଅନ୍ତୁ ।

( ପ୍ରଭୁର ଦୁଇ ହାତକୁ ଆବେଗରେ ନିଜ ଗାଲ ଉପରେ ଘୃଷ )

ରଙ୍ଗଲାଲ—ଗ୍ରମ୍ ଜାନେ ପ୍ରଭୁଦେବୀ, ସୀତା ମାଇ ଜାନେ—
ମେଁ ସଚ୍ ମୁଚ୍ ମର୍ ଯାଉଁଗା—ମେଁ ମର୍ ଯାଉଁଗା ।

ପ୍ରଭୁ—ତ'ଣ ହେଲା ଶେଠଜୀ, ଇମିତ ହଉଚନ୍ତି କାହିଁକି ?

ରଙ୍ଗଲାଲ—ନେହିଁ, ନେହିଁ, ପ୍ରଭୁଦେବୀ ! ମୋର ସବୁ କଥା
ଏଇଠି ଏଇ ଘରର ପାଖରେ ଅଟକି ଯାଉଚି !

ପ୍ରଭୁ—କଥା ପଚେ ଅଟକୁ, କିନ୍ତୁ ଦୟାକରି ଟଙ୍କାଟା ଅଟକାନ୍ତୁ ନାହିଁ ।
ମୁଁ ଏଣୁ ଦୁଇହାତ ପାତି ଭିକ ମାଗୁଛି......

ରଙ୍ଗଲାଲ—ଓ......ଲଜ୍ଜାସ୍ପେ, ଲଜ୍ଜାସ୍ପେ......ଔର ପାଞ୍ଚହଜାର୍,
ଲଜ୍ଜାସ୍ପେ ।

ପ୍ରଭୁ—ଧନ୍ୟବାଦ୍ । ଅଚ୍ଛା ପୁଣି କେବେ ଆସିବ ?

ରଙ୍ଗଲାଲ—ଅଭି ନେହିଁ, ଏକ୍ ହପ୍ତାକେ ବାଦ୍ ।

ପ୍ରଭୁ—ଅଚ୍ଛା, ହପ୍ତାକ ପରେ ପୁଣି ଏଇଠିକି ଆସିବ । ବର୍ତ୍ତମାନ
ଆସନ୍ତୁ—ନମସ୍କାର ।

ରଙ୍ଗଲାଲ—ନମସ୍ତେ ।

( ପ୍ରଭୁର ହାତକୁ ପୁଣି ଧରିବାକୁ ଯାଉଥିଲା )

ପ୍ରଭୁ—ହାତ ଧରିବେ, ଧରନ୍ତୁ, ଆପତ୍ତି ନାହିଁ, କିନ୍ତୁ ଆଉ ପାଞ୍ଚ
ହଜାର ।

ରଙ୍ଗଲାଲ—ତବ୍ ରହନେ ଦୋ । ଏକ ହପ୍ତାକେ ବାଦ୍ ଫିର
ମିଲ୍ ଙ୍ଗେ । ନମସ୍ତେ, ନମସ୍ତେ.........

(ରଙ୍ଗଲାଲ ଗୃଲଗଲା । ପ୍ରଭୁ ଠିଆ ହୋଇଥାଏ, କ୍ଷଣକ ଭିତରେ
ତାର ଅଭିନେତ୍ରୀର ରୂପ ବୁଆଡ଼େ ହଜିଗଲା । ଲଜ୍ଜା, ଘୃଣାରେ ସେ
ତାଳ ପକାଇଲା । ଉତ୍ତେଜନାରେ ସେ ନିଜ ହାତଟାକୁ କାମୁଡ଼ି ପକାଉ
ଥାଏ । ଏତିକି ବେଳେ ପୂର୍ବର ଯନ୍ତ୍ର ସଂଗୀତ ଶୁଣାଗଲା, ଆଉ ସଂଗୀତ
ମଧ୍ୟରେ ଭୂଷାରର କଣ୍ଠ ସ୍ୱର )

ତୁଷାର—ତୁମେ ଆଗେଇ ଯାଅ ପ୍ରଭା, ତୁମେ ପାରିବ— । ନାରୀର ଆବେଦନ କେବେ ବିଫଳ ହୁଏନା, ତୁମେ ପାରିବ ।

( ଯନ୍ତ୍ର ସଂଗୀତ ସହ ସମନ୍ୱିତ ରତ୍ନାକର ବାରମ୍ବାର ଏହି କଥା ତାକୁ ଶୁଣା ଯାଉଥାଏ । ଧୀରେ ଧୀରେ ସେ ପ୍ରକୃତସ୍ଥ ହେଲା । ମଞ୍ଚ ପୁଣି ଅଂଧକାର । ସଂଗୀତର ଶେଷସ୍ୱର ପରେ ପୁଣି ଆଲୋକ ଜଳି ଉଠିଲା-ବେଳକୁ ଦେଖାଗଲା ଖୁବ୍ ହସ ହସ ମୁହଁରେ ଠିଆ ହୋଇଛି ପ୍ରଭା । ସମ୍ମୁଖରେ ତାର ଜଲ୍ଲଲ ଉଦ୍ଦିନ୍ । ଜଲ୍ଲଲ୍ ଯେପରି ହାତରେ ସୁନାଗୃହ-ପାଇଛି )

ପ୍ରଭା—କ'ଣ ଏତେ ଦେଖୁଛନ୍ତି ମିଆଁ ସାହେବ—ମତେ ଭରସା ଦିଅନ୍ତୁ । ଦିଅନ୍ତୁ—କ'ଣ ଏତେ ଦେଖୁଛନ୍ତି ?

ଜଲ୍ଲଲ—( ଗଦ୍‌ଗଦ୍ ହୋଇ )—ଦେଖ୍‌ଚାହୁଁ—ଦେଖ୍‌ଚାହୁଁ—

ପ୍ରଭା—ଅଦ୍ଭୁତ ଲୋକ ଆପଣ । କହୁଲେ, "ପ୍ରଭାଦେବୀ ଆପଣଙ୍କର ହସ ଭାରି ସୁନ୍ଦର !"

ଜଲ୍ଲଲ—"ତୁମ ହାରୀ ସଜେ ଦଇ ଅଖ୍‌ନା—
ତୁମ୍‌ହାରୀ ବସ୍ ଖୁସି ଅପନା—
ତୁମ୍‌ହାରୀ ଏକ ହାଁ ପର—
ମୁନ୍‌ଶର ଦେହି କନ୍ଦରୀ ଅପନା ।"

ପ୍ରଭା—ବେଶ୍, ହେଲାତ ଏବେ—ପାଞ୍ଚ ମିନିଟ୍ ହେଲା ମୋ ହସ ଦେଖିଲେଣି—ଏଥିକି ମୋତେ ବିଦାକରିବେ କି ନାହିଁ କୁହନ୍ତୁ ?

ଜଲ୍ଲଲ—ସଜାଇ ନସ—ସଜାକ୍ ନସ—ଏ ଲଜ୍ଜାପ୍ତ ଦାଣ୍ ଦ୍ଧାନ୍…

ପ୍ରଭା—ଧନ୍ୟବାଦ—( ଜଲ୍ଲଲର ପ୍ରସ୍ଥାନ । ପୂର୍ବପରି ଯନ୍ତ୍ରସଂଗୀତ ଓ ତୁଷାର କଣ୍ଠସ୍ୱର ପରେ ମଞ୍ଚ ଅନ୍ଧାର ହୋଇ ପୁଣି ଆଲୋକ ଜଳି ଉଠିଲା ପରେ ଦେଖାଗଲା ମଞ୍ଚରେ ଅଛନ୍ତି ପ୍ରଭା ଓ ପୃଥ୍ୱୀ )

ପ୍ରଭା—ମୁଁ ଆଜ ପାର୍ଟନର ମି. ପୁଷ୍ପି । କେତେ ବାଟ ଆଜି ଏ ନଗେ୍ଲା ନଈକୂଳ ସ୍ତ୍ରାଟାରେ ବୁଲି ବୁଲି ଯିବା ?

ପୁଷ୍ପି—ବୁଲି ବୁଲି ଯିବାକୁ କିଏ କହୁଛି ? କାର୍‌କୁ ଆସନ୍ତୁ—

ପ୍ରଭା—ବାସ୍ତବକ୍ ଏଇଟା ଗୋଟିଏ ଦୃଶ୍ୟ । ଆମେ ବୁଲୁଛୁ, ଆମ ପଛେ ପଛେ କଲ୍ଟୁପଗଡରେ କାର୍‌ଟା ବୁଲୁଛି । କେତେ ପେଟ୍ରୋଲ ପୋଡ଼ିଲେଣି—

ପୁଷ୍ପି—ଆପଣ ମୋ ପାଖରେ ଥିଲେ ପେଟ୍ରୋଲ ହିସାବ ରଖେ କିଏ ? ଆସନ୍ତୁ କାର୍‌କୁ ।

ପ୍ରଭା—ନା—ଆଜ ସାରା ଟାଇମ୍‌ଟା ଆପଣଙ୍କ କାର୍‌ରେ ବୁଲିଲିଣି । ଆଉ କାର୍‌ରେ ବସିବାକୁ ଇଚ୍ଛା ନାହିଁ—ମତେ ବିଦାୟ ଦିଅନ୍ତୁ······

ପୁଷ୍ପି—ବିଦାୟ ?

ପ୍ରଭା—କିନ୍ତୁ ଗାଲ୍‌ହାତରେ ନୁହେଁ—ମୋ ପାଉଣା ସହ ମୋତେ ବିଦାୟ ଦିଅନ୍ତୁ—( ଆତୁର ହସ ହସ ମୁହଁରେ ଅପାଙ୍ଗ ଦୃଷ୍ଟିରେ ଚାହିଁ ) କ'ଣ ଭାବୁଚନ୍ତି ? ଅବଶନବାସ ପାଇଁ ଚୁମ୍ବା ଦେବେନାହିଁ ?

ପୁଷ୍ପି—ଚୁମ୍ବା, ମୁଁ ତ ଦୁଇଥର ଦେଇଛି ।

ପ୍ରଭା—( ହସି )—ଏଇଆ ? ଦୁଇଥର ଦେଇଚନ୍ତି ବୋଲି ଯେ ଆଜ ପାଞ୍ଚଥର ଦେବେନାହିଁ, ଏ କଥା ଆପଣଙ୍କ ଆୟୁ-ଦ୍ୟୁ ଫର୍ଦ୍ଦରେ କୋଉଁଠି ଲେଖାହୋଇଛି ? ଅଚ୍ଛା, କୁହନ୍ତୁ, ଦୁଇଥରରେ ଆପଣ କେତେ ଟଙ୍କା ଦେଇଛନ୍ତି ? ଅରେ, କୁହନ୍ତୁ ?

ପୁଷ୍ପି—( ଭଙ୍ଗାଗଳାରେ )--ମୋର କିଛି ମନେ ପଡ଼ୁନାହିଁ ।

ପ୍ରଭା—ମାନେ ?

ପୃଷ୍ଟି—ଆପଣଙ୍କର ଏ ଦୟ, ଏ କଥା ଶୁଣି, ମୋ ଟଙ୍କା କଥା ମୁଁ ଏକାବେଳକେ ଭୁଲିଗଲିଣି ।

ପ୍ରଭୁ—ଭୁଲିଯାଇଚନ୍ତି ତ ? ଭଲକଥା । ଦୁଇ ଥରରେ ଅଠହଜାର ଟଙ୍କା ଦେଇଥିଲେବି, ମନେ କରନ୍ତୁ, ଆପଣ କଣ୍ଟୁ ଦେଇ ନାହାନ୍ତି ।

ପୃଷ୍ଟି—ମୁଁ ଗୋଟେ କଥା ଭାବୁଚି ପ୍ରଭୁଦେବ ! ଆପଣ ନଥିଲେ, ଅରକ୍ଷନିବାସକୁ ରକ୍ଷା କରନ୍ତା କଏ ? ଟଙ୍କା ଆସନ୍ତା କୋଉଠୁ ? ଟଙ୍କା ଧଅନ୍ତା କଏ ? ଅଡଭୋକେଟ୍ ଗ୍ରମାଗର୍ଡ ଘର ଲୋକଠୁ ଆପଣ ଟଙ୍କା ଆଣି ପାରିଲେ !!

ପ୍ରଭୁ—ଅନେକ ବଡ଼ ବଡ଼ ଲୋକଙ୍କ ଦୁଆରୁ ତ ମୁଁ ପୁଣି ଖାଲି ହାତରେ ଫେରିଛି—

ପୃଷ୍ଟି—ନା ପ୍ରଭୁଦେବ, ଏ କଥା ମୁଁ ମୋଟେ ବିଶ୍ୱାସ କରିବନି ! ଏଇ ମୁହଁରେ ହସ ଟାଣି ଏ ହାତ ପାତି ମାଗିଲେ, ଆପଣଙ୍କୁ ଖାଲି ହାତରେ ଫେରେଇ ଦବ, ଏମିତ କେହି ପୁରୁଷାଧମ ଅଛି ?

ପ୍ରଭୁ—ଆପଣ ମିଛଟାରେ ମୋର ପ୍ରଶଂସା କରୁଚନ୍ତି ।

ପୃଷ୍ଟି—ମିଛ ପ୍ରଶଂସା କରିବା ଲୋକ ମୁଁ ନୁହେଁ । ଘୋଡ଼ା ଦଉଡ଼ ହେବା ଆଗରୁ ରେସ୍ ଘୋଡ଼ା ଯିମିତି ଦଉଡ଼ିବା ପାଇଁ ଅଥୟ ହଉଥାଏ, ଆପଣଙ୍କୁ ଗ୍ଧ୍ୟା ଦେବା ପାଇଁ ମୋ ପ୍ରାଣରେ ଯିମିତି ଗୋଟେ ଅଧୀର ଉନ୍ମାଦନା ଜାଗିଉଠେ । ଆପଣଙ୍କୁ ଦେଇ ପାରିଲେ ଯିମିତି ମୋ ଟଙ୍କାଗୁଡ଼ାକର ସଦ୍‌ଗତି ହେବ, ଏଇ କଥା ମୋ ମନରେ ଖେଳିଯାଏ । ଏଇ ନିଅନ୍ତୁ, ଗଣିବା ଦରକାର ନାହିଁ । ଗଲ

ଦୁଇଟିରତ୍ନ ଦେଖି । ହଁ, ମୋର ଗୋଟେ ଅନୁରୋଧ ପ୍ରଭୁଦେବ ।

ପ୍ରଭୁ—କୁହନ୍ତୁ— ।

ତୃପ୍ତି—କହୁଚି ? ନା କହିବି ନାହିଁ । ଆପଣ ଆଖି ବୁଜନ୍ତୁ ।

ପ୍ରଭୁ—କାହିଁକି ?

ତୃପ୍ତି—ମୋର ଏକାନ୍ତ ଅନୁରୋଧ, ମାଙ୍କ ମିନିଟ୍‌କ ପାଇଁ । କ'ଣ ବୁଜିବେ ନାହିଁ ।

ପ୍ରଭୁ—ଅଚ୍ଛା, ଆଖି ବୁଜିଲି ।

ତୃପ୍ତି—ମୁଁ ନ କହିବା ଯାଏଁ ଖୋଲିବେ ନାହିଁ ।

(ପକେଟରୁ ଗୋଟିଏ ଖୁବ୍ ଦାମୀ ହାର ବାହାର କରି ପ୍ରଭୁ ବେକରେ ପିନ୍ଧାଇ ଦେଲେ )

ହଁ, ଏଥର ଆଖି ଖୋଲନ୍ତୁ ।

ପ୍ରଭୁ— ( ତୃପ୍ତିଙ୍କର ଅର୍ଦ୍ଧ ଆଲିଙ୍ଗନ ଭିତରେ ରହି ) ଏ କ'ଣ ? ଏ ହାର········· ?

ତୃପ୍ତି—ନିଜ ଜିନିଷର ପ୍ରଶଂସା ନିଜ ମୁହଁରେ ଶୋଭା ପାଏନା, ତଥାପି କହୁଛି । ଅଦୌ ବିଶ୍ୱାସ କରି ନ ହେବା ଭଳି ଜାମିନ୍ଦା ଏ ହାରଟା······ । ଆମ ଦୁଇ ଭାଇଙ୍କ ସଂପତ୍ତି ଭଣ୍ଟା ହେଲାବେଳେ ଏ ହାରଟା ମୋ ଭାଗରେ ପଡ଼ିଲା ବୋଲି, ଭାଇ ଭାଉଜ ଦୁହେଁ ସେ ଦେଇଦିନ କାନ୍ଦି କାନ୍ଦି କଟେଇଛନ୍ତି । ଏ ହାର ସହିତ କୁଆଡ଼େ ଲକ୍ଷ୍ମୀଙ୍କର ସମ୍ପର୍କ ଅଛି ।

ପ୍ରଭୁ—କିନ୍ତୁ ମୋତେ କାହିଁକି ଏ ହାର ପିନ୍ଧେଇ ଦେଲେ ? ମୋ ନିଜ ପାଇଁ ତ ମୁଁ ସୁଧା ଝଗଡ଼ା କରୁନ । ମୁଁ ଯାହା କିଛି ନେଉଚି, ତା କେବଳ ଅନାଥନିବାସ ପାଇଁ ।

( ନଜରୁ ମୁକ୍ତ କରି ଆଣିଲ )

ପୃଷ୍ଟି—ମୁଁ ତ ସେ କଥା ଅସ୍ୱୀକାର କରୁନି ।

ପ୍ରଭା—ତା ହେଲେ, ଏ ହାରଟା ବଦଳରେ ଟଙ୍କା ଧରନ୍ତୁ ।

ପୃଷ୍ଟି—ଟଙ୍କା ମୁଁ ଦରକାର, ଅନ୍ତର ମଧ୍ୟ ଦେବ । ଏ ହାରଟା ଦେଇ ମୁଁ ଏଇ କଥା ଜଣେଇ ଦେବାକୁ ଚାହେଁ ଯେ ଆପଣ ଆସି ମୋ ପାଖରେ ଠିଆ ହେଲେ ମୋର ଆପଣଙ୍କୁ ଅଦେୟ କିଛି ନାହିଁ ।

( ପ୍ରଭା ମୁହଁରେ ପୂର୍ଣ ହସ ଫୁଟି ଉଠିଲା )

ପ୍ରଭା—ଆପଣଙ୍କୁ ବହୁ ଧନ୍ୟବାଦ ।

ପୃଷ୍ଟି—ଧନ୍ୟବାଦ ଦେଇ ମୋତେ ଆପଣଙ୍କଠୁ ଦୂରକୁ ଠେଲି ଦିଅନ୍ତୁନି ପ୍ରଭାଦେବୀ ! ( ପ୍ରଭା ପାଖକୁ ଲାଗି ଯାଇ ) ମୁଁ ଚାହେଁ, ଆପଣଙ୍କର ମୁହଁର ଏଇ ହସ, ଏଇ କଥା !

ପ୍ରଭା—ମୁଁ ତା ହେଲେ ଆସୁଛି, ନମସ୍କାର ।

ପୃଷ୍ଟି—ଯିବେ ? କିନ୍ତୁ ମୋର ଏକ ସାମାନ୍ୟ ଅନୁରୋଧ—ଆପଣ ଏକା ଯାଇ ପାରିବେନି । ମୁଁ ଆପଣଙ୍କୁ ଗାଡ଼ିରେ ନେଇ ଛାଡ଼ିଦେଇ ଆସିବି । ନା—ନା—ପ୍ରଭାଦେବୀ ! ହାତଯୋଡ଼ି ପ୍ରାର୍ଥନା କରୁଛି, ମୋର ଏଇ ସାମାନ୍ୟ ଅନୁରୋଧ, ମନା କରନ୍ତୁ ନାହିଁ ।

ପ୍ରଭା—( ହସି ) ଅଚ୍ଛା, ଚାଲନ୍ତୁ·········

ପୃଷ୍ଟି—ଆସନ୍ତୁ, ଡ୍ରାଇଭର, ଡ୍ରାଇଭର·········।

—ପରଦା—

# ଦ୍ୱିତୀୟ ଦୃଶ୍ୟ

[ ଦୁଷନ୍ତ ଗୃହର ଅଳିନ୍ଦ—ପ୍ରଫୁଲ୍ଲ ମନରେ ଦୁଷ୍ମନ୍ତ ଓ ତୁଷାର କଥା-ହୋଇ ଆସିଲେ । ସମୟ-ରାତି ]

ତୁଷାର—ଟଙ୍କାର ଅଭାବ ହବ ନାହିଁରେ ଦୁଷନ୍ତ, ଟଙ୍କା ଅଛି, ଟଙ୍କା ମିଳୁଛି— ଆହୁରି ଟଙ୍କା ମିଳିବ । କେବଳ ଲୋକଙ୍କ ମନକୁ ଠକିନେଇ ପାରିଲେ ହେଲା ।

ଦୁଷ୍ପନ୍ତ—ହଁ, କ୍ଷଣପ୍ରଭା ସେ ବିଦ୍ୟା ଜାଣନ୍ତି ।

ତୁଷାର—ହଁ ଦୁଷ୍ମନ୍ତ, ଲୋକଙ୍କ କୁଣ୍ଠିତ ମନକୁ ଠକିନେଇ, ତାଙ୍କ ହାତମୁଠାରୁ ଟଙ୍କା ଆଣିବାର ଉପାୟ ତାଙ୍କୁ ଜଣା ଅଛି । ସେ ଦିନ ଦେଖିଲୁତ— ବଙ୍ଗଳାର, ଜଗଲ ଉଦ୍ଧାର, ପୁଷ୍ଟି, ଏମାନେ କମିଶ ଟଙ୍କା ନ ଦେଇ ଏଣ୍ଟୁନତଣ୍ଟୁ ବାହାନା କରି ମିଟିଙ୍ଗରୁ ଉଠିଯାଇଥିଲେ । ଆଜ ସେଇମାନଙ୍କ ବାକ୍ସରୁ ହଜାର ୨ ଟଙ୍କାର ସୁଅ ଛୁଟିଛି । ଉଦ୍ୟମ ଥିଲେ, ଆନ୍ତରିକତା ଥିଲେ, ଆମର ଚେଷ୍ଟା କେବେ ବିଫଳ ହେବ ନାହିଁ ।

ଦୁଷ୍ମନ୍ତ—ମୋର ସ୍ୱପ୍ନ ଥିଲା— ଅବଞ୍ଚନାବାସ କଳିତ ସବୁଧନ ପାଇଁ ବଞ୍ଚି ରହିବ । ତୋର ସ୍ୱପ୍ନ ଥିଲା—ତୁ ଦରିଦ୍ର ନାରାୟଣଙ୍କ ସେବାରେ ନିଜକୁ ଉତ୍ସର୍ଗ କରିବୁ ।

ତୁଷାର—ଆଜ କ୍ଷଣପ୍ରଭା ଯୋଗେ ଆମର ସ୍ୱପ୍ନ ସଫଳ ହେବାକୁ ଯାଉଛି ।

ଦୁଷନ୍ତ—ଆଜ ଏତେବେଳଯାଏଁ ସେ ଫେରିଲେ ନାହିଁ କାହିଁକି ?

ତୁଷାର—ଏତେବେଳ ଯାଏଁ ସେ ଯଦି ଫେରି ନାହିଁ— ତା ହେଲେ ନିଶ୍ଚୟ ସେ ଖାଲି ହାତରେ ଫେରିବ ନାହିଁ ।

ଦୁଷ୍ମନ୍ତ—କିନ୍ତୁ ଗତ ଆସି ଏଠି ହେଲାଣି—। ପ୍ରାୟ ଦୁଇମାସ ହେଲା ସେ ଦିନରାତ ନ ମାନି ଖଟୁଚନ୍ତି । ଏତେ ପରିଶ୍ରମ କଲେ—

ତୁଷାର—ତୁ ଏଥିରେ ତାକୁ ବାଧା ଦେ'ନା ଦୁଷ୍ମନ୍ତ, ମୁଁ ଚାହେଁ ସେ ଏଥିରେ ତିଳ ତିଳ କରି ନିଜକୁ ଦାନ କରିଦେଉ ! ତା ହେଲେ ନୂଆ ନୂଆ ଯୋଜନା ନେଇ ତୋର ଅରକ୍ଷ-ନିବାସ ବଞ୍ଚି ରହିବ । ମୋର ଆଦର୍ଶ ଯେନ ମୁଁ ବଞ୍ଚି ରହିବି । ଆଜ ହତଭାଗ୍ୟ, ଅନ୍ଧ, ମୂକ, ବଧୀର ଅରକ୍ଷ ଅନାଥ ମାନଙ୍କ ଦୁଃଖ ଘୁଞ୍ଚିବ । ହଁ ତୁ ଚାଲ୍...... ମୋତେ ଉପରକୁ ନେଇ ଚାଲ୍, ଲାଇବ୍ରେରୀ ଘରକୁ । ଚାପ ଅଛି ।

( ଦୁହିଁଙ୍କ ପ୍ରସ୍ଥାନ ପରେ ଆସିଲେ ସୁକାନ୍ତ ଓ ହେମାଙ୍ଗିନୀ—ସୁକାନ୍ତ ବାହାର ଫେରିବା ବାଟରୁ ଚାହିଁ ଉଦ୍‌ବିଗ୍ନ )

ହେମାଙ୍ଗିନୀ—ତୁ ମିଛ ମଣିବୁ ବୋଉ, ଅବେର ନୁହେଁ, ଶହେ ଥର ମୁଁ ମନେ ମନେ ଠିକ୍ କଲିଣି—ତୋର ଘର କଥାରେ ପାଟି ଫିଟେଇବନି । ହେଲେ ପାରୁଛୁ କୋଉଠି ? ନିଜର ରକ୍ତର ଟାଣତ... ... !

ସୁକାନ୍ତ—(ହସି)-- ଆଜ୍ଞେ କଥା କହିବାକୁ ତତେ ମନା କଲା କିଏ ? ଏ ଘରର ହିଁ ଅଛୁ, ତୋ ପାଟି କିଏ ବନ୍ଦ କରିବ ? କହ କଣ କହୁଚ—ମୁଁ ଶୁଣିବି ।

ହେମ—ସେଠିତ ବସିଥିଲୁ—ଏତିକି ଉଠି ଆସିଲୁ କାହିଁକି ?

ସୁକାନ୍ତ—ଆଜ୍ଞେ, ସେ ପରା ଏତେବେଳଯାଏ ଁ ଆସିନାହିଁ... ।

ହେମ—କିଏ ?

ସୁକାନ୍ତ—ପ୍ରଭା ।

ହେମ—ତେବେ ତୁ ତା'ର ବାଟକୁ ଚାହିଁ ବସିବୁ !

ସୁକାନ୍ତ—ହଁ । ମା'ଟା ପଷ, ତୁ ଟିକେ ରହ, ପ୍ରଭା ଆସୁ । ସେ ନିଜ ହାତରେ ପରଷିବ, ତୁ ମୁଁ ସାଙ୍ଗ ହୋଇ ବସି ଖାଇବା ।

ହେମ—ତାହାଙ୍କ ! ପ୍ରଭା କିଏ ! ଏ ଘରର ଦାସୀ ନା ଏ ଘରର ବୋହୂ ? ଏଇ କଥାପାଇଁ ଗୋଟାଏ ଯୁଗ ହେଲାଣି-- ମୁଁ ଏ ଘରର ମୁହଁ ଚାହୁଁନ ଥିଲି । ଆଜି ତୁ ପୁଣି ମୋତେ ସେଇ କଥା କହୁଛୁ ? ପ୍ରଭା କିଏ ! ତାହାଙ୍କ ସେ ସୁନାଗହଣାରେ ସାଜି ହୋଇ ବନାରସୀ ଶାଢ଼ୀ ପିନ୍ଧି ଏ ଘରର ଘରଣୀ ସାଜିଛି !

ସୁକାନ୍ତ—ମାଗି ଯାଚି ସେ ଗହଣାରେ ସାଜି ହୋଇନି କି ଘରର ଘରଣୀ ହୋଇନି । ମୋ ନିଜ ହାତରେ ମୁଁ ତାକୁ ସଜେଇ ଦେଇଛି । ଯୌତୁକଧନ ଗୁଡ଼ିକ ଯେଉଁଟା ମୁଁ ତା କାନିରେ ବାନ୍ଧିଦେଲି, ଉଇମଣ୍ଡ ସେ କଟା କାଠ ପଡ଼ିଗଲା । ଖାଲି ମୋର ମୁହଁକୁ ଚାହିଁ ତା ପାଟିରୁ କଥା ବାହାରିଲା ନାହିଁ । ଏଇଠି ତା' ଶାଶୁ ମଲା; ମୋର ସେବାରେ ଧନ ଗଣ୍ଡ ବୁଡରନ୍ଧ ଶାଶୁ ପାଇଁ କାନ୍ଦିବାକୁ ବି ତାକୁ ବେଳ ମିଳିଲା ନାହିଁ । ଏତେ ବଡ଼ ସଂସାର ଆଜି ଚଳାଉଛି କିଏ ! ସେ ଘରଣୀ ହୋଇଛି ସତ, ହେଲେ ତାହାର ଉପରେ ହାକିମୀ କରୁ ନାହିଁ । ଝୁଅ ଜନ୍ମ ହୋଇଥିଲୁ, ତୁ ତ ପରଘରକୁ ଗଲୁ । ପୁଅ ତ ତା ବାଟରେ ଚାଲିଲା । ଆଜି ମୁ କଣ ସବୁବେଳେ ଇମିତ ଜଞ୍ଜାଳରେ ବୁଡ଼ି ରହିଥାନ୍ତି !

ହେମ—ଜଞ୍ଜାଳରୁ ଉଧୁରିବାପାଇଁ ଭାଇ ଭଲ ବାଟଟାଏ ବାଛିଛି ଏବା।

ସୁକାନ୍ତ—ତୁ ମୋର ପେଟରୁ ଜନ୍ମିଛୁ ହେମ। ଯଦି ମୋ ଆଖିରେ ଧରା ନ ପଡ଼ ତୋ ଆଖିରେ ମନ୍ଦଟା ଧରା ପଡ଼ିଲା ତେବେ ମୁ କହୁଛି, ପ୍ରଭା ମନ୍ଦ ନୁହେଁ। ମୋ କପାଳଟା ମନ୍ଦ।

ହେମ—(ଗୁମ୍ ମାରି)—ହୁଁ! ଉପରେ ଭାଇଙ୍କ ଶୋଇବା ଘରଟା ଏବେ ଦେଖିଛୁ?

ସୁକାନ୍ତ—ପ୍ରଭା ଆସିବା ଦିନଠୁ ମୁଁ ଏ ଘରର କିଛି ଦେଖେ ନାହିଁ।

ହେମ—କାହା ହୁକୁମରେ ଭାଇଙ୍କ ଲାଇବ୍ରେରୀ ଘରର ଏ ପାଖ ଘରଟା ତୁଷାର ବାବୁଙ୍କ ଶୋଇବା ଘର ହୋଇଛି?

ସୁକାନ୍ତ—ଦୁଷ୍ମନ୍ତର ହୁକୁମରେ।

ହେମ—ଭାଇଙ୍କ ଶୋଇବା ଘର ଆଉ ତୁଷାର ବାବୁଙ୍କ ଶୋଇବା ଘର, ଏ ଦ’ଟାକୁ ତା ହେଲେ ତୁ ଦେଖିନୁଁ?

ସୁକାନ୍ତ—ନା।

ହେମ—ଘର ଦ’ଟାର ଖବର ଭଲ କିଛି ରଖିଛୁ?

ସୁକାନ୍ତ—କି ଖବର?

ହେମ—ଘର ଦ’ଟାର ସାଜସଜାରେ ଏବେ ଟିକେବି ତଫାତ୍ ନାହିଁ। ପଲଙ୍କ, ଆଲମିରା, ବିଛଣା, ଅଲୁଅ, ପଙ୍ଖା, ସବୁ ଏକ୍‌ବାଟର। ଯେତେ ଜାଣିବା ଲୋକ ହେଲେ ବି ଚିହ୍ନିପାରିବନି। ଏ ଢଙ୍ଗ କାହିଁକି?

ସୁକାନ୍ତ—ଆଜି ଏ ଘରେ ଦୁଷ୍ମନ୍ତ ଯିମିତି ପୁଅ, ତୁଷାର ବି ସିମିତି ପୁଅ—ଦୁହେଁ ସମାନ।

ହେମ— କନୁ ବୋଉ, ତୁଷାର ଅଛି, ଅସୁନ୍ଦର, ଆଉ ଦୁଷ୍ମନ୍ତ ସୁସ୍ଥ, ସୁନ୍ଦର । ଏ ଦୁହିଙ୍କ ମଧ୍ୟରେ ଟିଆ ହେଉଛ ବୁଦ୍ଧିମତୀ, ଯୁବତୀ ଷଣ୍ଢୁଖ ।

ସୁକାନ୍ତ— ହେମ ?

ହେମ— ବୋଉ, ତୁ ସମସ୍ତଙ୍କୁ ଭଲପାଉ, ସମସ୍ତଙ୍କୁ ବିଶ୍ୱାସ କରୁ । ତୋ ଆଖିରେ ସମସ୍ତେ ସମାନ କନୁ ଦୁନିଆଁ ଚାଲିଛି······( ସୁକାନ୍ତ ଭିତରକୁ ଚାଲିଗଲେ )
ମୁ ଏ ଘରର ଝିଅ ବୋଉ । ଛୋଟ ଦୁଃଖର ଅପମାନ ପାଇଲେ ବି ଏ ଘରର ମାନ ସମ୍ମାନକୁ ମୁ ଏତେ ତଳିଆ ମାଟିରେ ମିଶାଇ ଦେବନି

( ବାହାରକୁ ଚାଲି ଯାଉଥିଲା ବେଳେ ପ୍ରଭା ଆସିଲା )

ପ୍ରଭା—ହେମ ! ତୁ କେତେବେଳେ ? ତାହୁଁ କୋଉଦିନଠୁ ଛ ଆସୁ ନ ଥିଲୁ ? ଆଜ କମିତ ମନେ ପଡ଼ିଗଲା ? ମଲା, ଇମିତ ଗୁହିଁ ରହିଚୁ କଣ ? ଆ, ଭିତରକୁ ଆ—

ହେମ—ନାଇଁଲେ, ଯାଉଥିବା ବାହାରକୁ ଯିବାର କଥା, ସିଏ ଆଉ ଭିତରକୁ ଅଖି ଫେରେଇବ ତାହୁଁକ ?

ପ୍ରଭା—ହୁଁ ! ମୁଁ ଆମର ସେହି ପଢ଼ା ଦିନ କଥା ଭାବୁଛି ! ତାହୁଁ, ତୁଯ ଯେତେବେଳେ କୋଉଥିରେ ତ କଳ୍ପ ବଦଳ ନାହିଁ କଥା କହିବା ଚାତୁରୀ ଏତେ ଶିଖିଲୁ କମିତ ? ( ହେମ ହାତ ଧରି ) ଆସୁଚୁ ନା, ଦେଖିବୁ ?

ହେମ—ସତେ କଳ ପ୍ରଭା, ତାହୁଁ କେତେବେଳୁ ଅଇଲିଣି । ଭାବଥିଲି, ନିଜ ହାତରେ ପରଶି ଭାଇଙ୍କୁ ଖାଇବାକୁ ଦେବ । ହେଲେ ତୁ ତ ଅହିଲୁଣି । ମୁ ଆଜ ଏ

ସଂସାରରେ ପଶି ସେ । ସବୁ ଭୁଲିବ ନାହିଁ କି ? ହେଉ ତୁ ଯା—ତାଙ୍କ ଖବର ବୁଝ୍, ମୁ ଯାଉଛି ।

(ଚାଲିଗଲେ--ପ୍ରଭା ଅବାକ୍ ହୋଇ ଠିଆ ହୋଇଥାଏ । ଆସିଲେ ମାର)

ମାର—ନୂଆବୋଉ ?

ପ୍ରଭା—ବୋଉ କାହାନ୍ତି ମାର ?

ମାର—ଠାକୁର ଘରେ—

ପ୍ରଭା—ଓ ଅଚ୍ଛା ଚାଲ—କଣ ଦେଖୁଛ ?

ମାର—ନୂଆବୋଉ, ଏ ହାର ?

ପ୍ରଭା—ହାର—ହଁ ମାର—ଏ ହାର ସ୍ୱାମୀଙ୍କର ଉପହାର ନୁହେଁ ।

ମାର—ତେବେ, ତମେ କଣ ଏ ହାର କିଣିଲ ?

ପ୍ରଭା—କିଣିଲି ? ତମର ମନେଥିବ ମାର—ଇମିତି ସଞ୍ଜବେଳେ ଦିନେ ମୁଁ ବଜାରରୁ ଫେରିଲି । କେହୁ ନ ଦେଖୁଣୁ ତମେ ଆଗେ ଦେଖିଲ କାନରେ ମୋର ଦୁଲ୍ ନାହିଁ । ଅଜବ ସିମିତି ତମର ଆଖିରେ ଏ ହାରଟା ପଡ଼ିଲା । ସେଦିନ ଆଜି ଏ ଦିନ ! ···ନା,ମାର, ସେ କିଛି ନୁହେଁ, ଚାଲ ।

ମାର—(କାନ୍ଦ) କିଛି ନୁହେଁ କିମିତି ? ବାବୁଙ୍କ ତମେ·····?

( କିଛି ନ କହିପାରି କାନ୍ଦୁଥାଏ )

ପ୍ରଭା—କ'ଣ ହେଲା ମାର, କ'ଣ ହେଲା ? କାନ୍ଦୁଛ କାହିଁକି ?

ମାର—ଏଇ ନିଅ, ଏ କାଗଜ, ତମ କଥା କ'ଣ ଲେଖିଛି ପଢ଼ ?

( ମାର ଚାଲିଗଲା )

ପ୍ରଭା— (ମାସିକ ପତ୍ରିକା ଖୋଲି ପଢ଼ିଲା) ବହୁଶ୍ରୀ ତରୁଣୀ, ସ୍ୱର୍ଣ୍ଣପ୍ରଭା ଦେବୀ—ଆଦର୍ଶ କର୍ମୀ । ପରନ୍ତୁ ନିଜର ପାଇଁ ନିଜକୁ ଉତ୍ସର୍ଗ କରିଚନ୍ତି । ଆମର ବୃନ୍ଦ ଫଙ୍କାର, ସ୍ୱର୍ଣ୍ଣପ୍ରଭା ଦେବୀଙ୍କ

ସମ୍ମୁଖରେ କଣ କହେ ଜାଣନ୍ତି ? ସ୍ୱାମୀ ଅନ୍ଧହେବା ଭଲ—ଗତ ଦିନ ହୁଏ, ଆଜ ଦିନ ହୁଏ ଗତ । କ୍ଷଣପ୍ରଭା ସବୁଠି ଦଶନ୍ତି । ଏଇ ଦେଖନ୍ତୁ ! ଯୋଡା ଭାରବାଗ୍ ଅକାର୍‌ମିଅାଁଙ୍କ ଆଗରେ ହସଷ୍ଟା ଚମତ୍କାର । ଅର୍ଥ, ହସ କଅନ୍ତୁ—ଟଙ୍କା ଦଅନ୍ତୁ । ଶେଠ୍ ବଙ୍ଗାଲଲଙ୍କ ପାଖରେ ଏକାକୀ ନରେନ୍ଦ୍ରା, ଟଣାଟଣି ନୁହେଁ—ହ ଉଗଣି ନୁହେଁ—କରମର୍ଦ୍ଦନ ! ଲକ୍ଷପତି ଶ୍ରୀ ପୃଷ୍ଟିଙ୍କର ଦାମିକା ଗାଡ଼ୀ ଉପରେ—ପୃଷ୍ଟି ଦମ୍ପତି ନୁହନ୍ତି । ଦାନବୀର ପୃଷ୍ଟି ଓ ବାରାଙ୍ଗନା ଅଦର୍ଶ ରମଣୀ କ୍ଷଣପ୍ରଭା । ହାସ୍ୟ-ସ୍ପର୍ଶ-ସାନିଧ । ମୂଲ୍ୟ ବେଶି ମୁହେଁ—ସାମାନ୍ୟ କେତେ ହଜାର ଟଙ୍କା । ଅଂ, ଏ କଏ ? ଓ, କର୍ମବୀର ଦୁଷ୍ମନ୍ତ । ସେ ମଧ୍ୟ ଏଇ ସୁନ୍ଦରୀ ତରୁଣୀଙ୍କ ଚରଣ କମଳରେ ନିଜର ସର୍ବସ୍ୱ ଅର୍ପଣ କରୁଛନ୍ତି । ବଜାମସ୍ତରେ ଯାଇଚନ୍ତି କଣ ? ପାଠକେ ସନ୍ନ୍ୟା-ସୀର ଅଶ୍ରୁ ନେଇଲେ ବୁଝି ପାରିବେ ।

(ପଡ଼ା ଶେଷ ହେଲାକୁ କ୍ଷଣପ୍ରଭାର ଯେପର ସଜ୍ଜା ଲୋପପାଇ ଆସୁଥାଏ)

—*ପ ର ଦା*—

## ତୃତୀୟ ଦୃଶ୍ୟ

[ତୁଷାର କାନ୍ତର ଶୋଇବାଘର—ସମୟ ମଧ୍ୟ ରାତ୍ରି । ତୁଷାରକାନ୍ତ ସୁସଜ୍ଜିତ ପଲଙ୍କ ଉପରେ ଶୋଇଛି । କ୍ଷଣପ୍ରଭା ଆସିଲା । ପୂର୍ବର ସେହି ବେଶ । ତୁଷାରର ବିଛଣା ଉପରେ ବସି କିଛି ସମୟ ନିର୍ନିମେଷ ନୟନରେ ତାକୁ ଚାହିଁ ରହିଲା । ପିନ୍ଧା ଶାଢ଼ୀ ମଥାରୁ ଖସି କ୍ରମେ ବକ୍ଷରୁ ଖସି ଯାଉଛି । ସେଥିପ୍ରତି ନଜର ନାହିଁ । ତୁଷାରକୁ ସେ ଡାକି ଉଠାଇଲା ]

ପ୍ରଭା—ଶୁଣୁଚ...... ।

ତୁଷାର—କଏ ?
ପ୍ରଭା—ମୁଁ…… ;
ତୁଷାର—ଓଃ, ପ୍ରଭା, ଶୋଇନ ? ……ରାତି କେତେ ହେଲାଣି—ବାରଟା ?
ପ୍ରଭା—ନା, ଅଳ୍ପ ବେଶି । ପିଏ ପୁଅଙ୍କୁ ଶୋଇଲେଣି ।
( ପ୍ରଭା ଆଗ୍ରହରେ ତୁଷାରର ଉତ୍ତରକୁ ଚାହିଁ ରହିଲା )
ତୁଷାର—ଅଜ ତୁମେ ଶୋଇ ନାହଁ କାହିଁକି ? ରାତି ଏତେ ହେଲାଣି—ଏଥର ଶୋଇପଡ଼ ।
(ନିଜେ କରମାଡ଼ ଶୋଇଲା । ପ୍ରଭାର ଧୈର୍ଯ୍ୟଚ୍ୟୁତ ଘଟୁଥାଏ । ସ୍ୱାମୀର ଏଇ ଉଦାସୀନତା ଯୋଗୁଁ, ମନରେ ରାଗ ଓ ଅଭିମାନ, କଣ୍ଠରେ ଉତ୍ତେଜନା)
ପ୍ରଭା—ଗୋଟେ କଥା ମୁଁ ପଚାରିବ ?
ତୁଷାର—ଭାରି ସୁନ୍ଦର ଗୋଟିଏ ସ୍ୱପ୍ନ ଦେଖୁଥିଲି ପ୍ରଭା । ଆମର ଏ ଅବସନ୍ନବାସ ବହୁଗୁଣରେ ବଢ଼ି ଯାଇଛି । ହଜାର ହଜାର ଅବଶ ଅଟ୍ଟାଳି ନେଇଚନ୍ତି । ଅନ୍ଧ ହୋଇବ ମଣିଷ ଇମିତି ସୁନ୍ଦର ସ୍ୱପ୍ନ ଦେଖିପାରେ ।
ପ୍ରଭା—ମୋ କଥା ଶୁଣିବ ନାହିଁ ?
ତୁଷାର—(ଉଠିବସି) ଭଣ ହୋଇଛି ପ୍ରଭା, କ କଥା ?
ପ୍ରଭା—ଅବସନ୍ନବାସ ଠିକ ହୋଇଛି, କାମ ଅଗେଇଛି । ଏଣିକି ତୁମ୍ଭେ ତାକୁ ସମ୍ଭାଳନ୍ତୁ, ଅଉ ଅମେ ପାରିବା ନାହିଁ ।
ତୁଷାର—ଓ, ପୁଣି ସେଇ ପାଗଳାମି ବାହାରିଲା ପରା ।
ପ୍ରଭା—ତମ ବସ୍ତୁରରେ ତେବେ ଏଇଟା ମୋର ପାଗଳାମୀ ?
ତୁଷାର—କିନ୍ତୁ କାମ ଅଗେଇଛି କିପରି ? ତମର ଅକ୍ଳାନ୍ତ ପରିଶ୍ରମ ପାଇଁ ତ ? ତମେ ତା'ର ପୋଷଣାହାଣ୍ଡୀ ।

ପ୍ରଭ—କିନ୍ତୁ ଏ ସବୁ ହଉଚି କଣ ? ମୋର ନିନ୍ଦା, ମୋର ଅପବାଦ, ମୋର କୁତ୍ସିତ ପରିହାସ କରି ଏ ପତ୍ରିକା ଯାହା ଲେଖିଚ୍ଛି, ଏ ସବୁକୁ କଣ ଆଖିବୁଜି ସହି ଯିବାକୁ ହେବ ?

ତୁଷାର—ହଁ, ପ୍ରଭୁ, ସହି ଯିବାକୁ ହେବ । କାରଣ, ତମେ ପ୍ରକୃତ କର୍ମୀ । ଇଏତ ଯୁଗ'ର ଆରମ୍ଭ ମାତ୍ର । ତମକୁ ଆହୁରି ନିନ୍ଦା, ଆହୁରି ଅପବାଦ ଭିତରେ ଆଗେଇ ଯିବାକୁ ପଡ଼ିବ । ଏଇ ନିଃସହାୟ, ଅନ୍ଧ, କାଇ, ଅକ୍ଷମ ମାନଙ୍କ ପାଇଁ ଧନ କୁବେରମାନଙ୍କ ମୁଠା ଖୋଲି ଆହୁରି ଧନ ଆଣିବାକୁ ପଡ଼ିବ ।

ପ୍ରଭୁ—ଏ ଲେକ୍‌ଚର୍‌ ବନ୍ଦ କର, ବନ୍ଦ କର କହୁଚି ।

ତୁଷାର—ପ୍ରଭୁ ।

ପ୍ରଭୁ—ଖୁବ୍‌ ହୋଇଚି ! ମୁଁ ଖୁବ୍‌ ସହିଚି । ଆଉ ନିଜକୁ ମୁଁ ଯଚେଇ ଭିକ୍ଷା ମାଗି ପାରିବିନି ।

ତୁଷାର—ତେବେ ?

ପ୍ରଭୁ—ହୃଷୀକେଶ ବାବୁଙ୍କ ହାତରେ ଏ ସବୁ ଭାର ଟେକିଦେଇ ଆମେ ଏଠୁ ଗ୍ଳଲିଯିବା ।

ତୁଷାର—କୁଆଡ଼େ ଯିବା— ?

ପ୍ରଭୁ—ଏ ଦୁନିଆଁ ଛୋଟ ନୁହେଁ ।

ତୁଷାର—କିନ୍ତୁ ଆମେ ଛୋଟ । ମୁଁ ଅନ୍ଧ, ଅକ୍ଷମ ।

ପ୍ରଭୁ—କିନ୍ତୁ ମୁଁ ନୁହେଁ—

ତୁଷାର—ତମେ ତା' ହେଲେ ମୋତେ ପୋଷିବା ପାଇଁ ପୁଣି ଗ୍ଳକିରି କରିବ ।

ପ୍ରଭୁ—ତମେ ସହି ପାରିବ ନାହିଁ, ନାଁ ?

ତୁଷାର—ଏ ପ୍ରଶ୍ନ ମତେ ନ ପଚାରି ତମେ ନିଜକୁ ପଚାର ।
ପ୍ରଭା—ନ ପଚାରିବ ତମଠୁ ଉତ୍ତର ପାଇଛି । ନିଜ ପେଟ ପାଇଁ ନିଜେ ଚାକିରୀ କରିବ, ତହିଁରେ ମନ୍ଦ ପାଉନ । କିନ୍ତୁ ଏ ବାପ ପାଇଁ ହାତ ପାତି ଭିକ ମାଗିବାକୁ ତମେ ମୋତେ ନିଜ ହାତରେ ବାର ଦୁଆରକୁ ଠେଲି ଦେଉଛ ।
ତୁଷାର—ଏ ଦଇତା ଭିତରେ ଅକାଶ ପାତାଳ ପ୍ରଭେଦ ଅଛି, ପ୍ରଭା— ।
ପ୍ରଭା—ତମ ଆଖିରେ ଥାଇପାରେ, ଦୁନିଆ ଆଖିରେ ଥାଇପାରେ ! କିନ୍ତୁ ମୋ ଆଖିରେ ସୂତାଏବି ପ୍ରଭେଦ ନାହିଁ । ମୋ ଅନ୍ଧ ସ୍ୱାମୀର ସଂସାର ଚଳେଇବାକୁ ମୁଁ ଦାଣ୍ଡକୁ ବାହାରି ଭିକ୍ଷା କଲେ ମତେ ଲଜ୍ୟା ହେବ ନାହିଁ, ଅପମାନ ହେବ ନାହିଁ । କିନ୍ତୁ ଏ ବନ୍ଦୀଶାଳାରୁ ମତେ ମୁକ୍ତକର— ଏ ଜଂଜାଳରୁ ମୋତେ ବଞ୍ଚାଅ ।
ତୁଷାର—ପ୍ରଭା !
ପ୍ରଭା—( ଗଳା ଭାଂଗି ଆସୁଥାଏ ) ମୁଁ ଏ ରାଜପ୍ରାସାଦ ଖୋଜି ନଥିଲି, ମୁଁ ଖୋଜୁଥିଲି ତୁମକୁ—ତୁମର ଏ ପାଦତଳେ ଆଶ୍ରୟ ! ଏଇ ମୋର ସ୍ୱର୍ଗ ! ଏଇଟି ମୋର ମୁକ୍ତି । ମୁଁ ତୁମକୁ ଅନୁନୟ କରୁଛି—ତୁମେ ଚାଲ, ଆମେ ଏଠୁ ଚାଲିଯିବା ।
ତୁଷାର—ତୁମେ ନିର୍ବୋଧ ପ୍ରଭା—ମୋ କଥା ତୁମେ ଶୁଣ ।
ପ୍ରଭା—( ଦୂରେଇ ଯାଇ ) କଣ ଆଉ ଶୁଣିବି ।
ତୁଷାର—ଶୁଣ, କୁଆଡ଼େ ଗଲ ପ୍ରଭା—ମୋ ପାଖକୁ ଆସ, ଆସ । ( ପ୍ରଭା କାନ୍ଧରେ ହାତ ରଖି ) ରାଜପ୍ରାସାଦ ତୁମେ କାହାକୁ କହୁଚ ପ୍ରଭା ? ଆମ ପାଖରେ ପଥ ଓ ପ୍ରାସାଦ ସବୁ

ସମାନ । ତମେ ଅନେକ କଥା ଶୁଣ । କହୁଚ—ଅନେକ କଥା କହି ଯାଉଚ, କିନ୍ତୁ ଯେଉଁ ଆଦର୍ଶ ପାଇଁ ଆମେ ଏତେଦୂରର ଆଗେଇ ଆସିଛେଁ, ସେ କଥା ତମେ ସମ୍ପୂର୍ଣ୍ଣ ଭୁଲି ଯାଉଚ !

ସୁଭ୍ରା—ଆଦର୍ଶ !

ତୁଷାର—ଅନେକବାର ମୁଁ ତୁମକୁ କହିଛି, ଆଜି ମଧ୍ୟ କହୁଛି—ଯେ ଦରିଦ୍ର ନାରାୟଣଙ୍କ ସେବା ହେଲା ଆମ ଜୀବନର ଏକମାତ୍ର ଲକ୍ଷ୍ୟ । ଆଜି କେବଳ ସେଇଥିପାଇଁ......

ସୁଭ୍ରା—ନା । ସବୁଯାଏ ତମର କଥାକୁ ମୁଁ ବେଦର ଗାର ପରି ମାନିଥିଲି । କିନ୍ତୁ ଆଜି ପାରୁନି । ତମର ଏ ଆଦର୍ଶର ଦୁହାଇ ଦେଇ, ଟଙ୍କା ପାଇଁ ତମେ ଯାଇଚ—ଦୁଷ୍ମନ୍ତ ଯାଇଚନ୍ତି । କିନ୍ତୁ ଏ ସହରର ଧନପତିମାନେ ତମକୁ ଖାଲି ହାତରେ ଫେରାଇ ଦେଲେବେଳେ, ମୋ ହାତରେ ହଜାର ହଜାର ଟଙ୍କା ଢାଳି ଦେଇଚନ୍ତି, କାହିଁକି ? କଣ ତମର ଏ ଆଦର୍ଶରେ ଭୁଲି ଯାଇ...... ?

ତୁଷାର—ନା । ତମରି ଏ ରୂପର ମୋହରେ ତରଳି ଯାଇ ।

ସୁଭ୍ରା—ଏ କଥା,—ଏ କଥା କହି ପାରୁଚ ତମେ ?

ତୁଷାର—ଯାହା ସତ, ମୁଁ ତାହାହିଁ କହୁଛି !

ସୁଭ୍ରା—ନା, ଯାହା ସତ ତାର ସନ୍ଧାନ ତମେ ପାଇନ । ତମର ବାହାରର ଆଖି ଫୁଟିଛି । କେବଳ ତମେ ହସାଇନ । ତମର ଭିତରର ଦୃଷ୍ଟି ମଧ୍ୟ ଆଉ ନାହିଁ । ଆଦର୍ଶରେ ଭୁଲି ମୋ ପାଇଁ ତମେ ଗୋଟାଏ ଜଡ଼, ପାଷାଣ ପାଲଟି ଯାଇଚ । ତମେ ମତେ ବିବାହ କରିନ—ବିବାହ କରିଚ ତମର ଏ ଆଦର୍ଶକୁ ।

ତୁଷାର—( ହସି ) ପ୍ରଭା !

ପ୍ରଭା—ଏଇ ଝିଲମିଲ୍ ଶାଢ଼ୀ ପିନ୍ଧି, ସୁନା ଗହଣାରେ ସଜ୍ଜିତ ହୋଇ ଅଭିସାରିକା ବେଶରେ ତୁମର ଏ ସ୍ୱବର୍ତ୍ତୀ ସ୍ତ୍ରୀ ଯେତେବେଳେ ପର ପୁରୁଷ ପାଖରେ ହାତ ପାତି ଠିଆ ହୁଏ—

ତୁଷାର—ହାତ ପାତି ଠିଆ ହୋଇ ସେ କେବଳ ଅଭିନୟ କରେ ପ୍ରଭା, ଆଦର୍ଶକୁ ବଞ୍ଚାଇବା ପାଇଁ ସେ ଅଭିନୟର ଆଶ୍ରୟ ନିଏ ।

ପ୍ରଭା—ଅଭିନୟ ! ନାଁ ସତ୍ୟ ଏ ଖେଳକୁ ତମେ କହୁଚ ଅଭିନୟ ! ମୁଁ ଯଦି ସୁନ୍ଦରୀ ହୋଇଥାଏ, ତେବେ କଣ ମୋର ଏ ସୁନ୍ଦର ରୂପକୁ ମୁଁ ଏଇଥିପାଇଁ ସତେଜ କରି ରଖିଚି ।

ତୁଷାର—ତୁମର ସୁନ୍ଦର ରୂପ ପାଇଁ ତମେ ଏ ଅଭିଯୋଗ କର ନାହିଁ ପ୍ରଭା ! ଆଜ ମୋର ଏ କୁତ୍ସିତ ରୂପକୁ ଦେଖିବାର ଶକ୍ତି ମୋର ନାହିଁ । କିନ୍ତୁ ଦିନେ ଏଇ କଦର୍ଯ୍ୟ ବଦାଭାବ ରୂପ ଉପରେ ଯେଉଁ ସୁନ୍ଦର ରୂପ ଜଳୁଥିଲା, ତାକୁ ଆଜବି ମୁଁ ଭୁଲି ପାରିନି । ମତେ ଦେଖି କଣ ତମେ ବୁଝି ପାରୁନ ଯେ, ସୁନ୍ଦର ରୂପର ଶେଷ କେଉଁଠି ?

ପ୍ରଭା—ଦିଅ ତେବେ ମତେ ତମପରି କଦର୍ଯ୍ୟ ବଦାଭାବ କରି । ସେଇଠି ସବୁ ନିଷ୍ପତ୍ତି ହୋଇଯାଉ । ନାହିଁତ ମୁଁ ପୁଣି ଥରେ କହୁଚି । ଏ ବୟସର ବୋଝ ଯେତେ ମୁଁ ଆଉ ନାଁ ସତ୍ୟ ଖେଳ ଖେଳି ପାରିବିନି— ।

ତୁଷାର—କଣ ତୁମେ କହୁଚ ପ୍ରଭା ! ନାଁ ସତ୍ୟ ଖେଳ ତୁମେ କହୁଚ କାହାକୁ ?

ପ୍ରଭା—ସେ କଥା ଯିଏ ଅଙ୍ଗେ ନଭେଇଛି, ସେ ବୁଝେ । ତମେ ନିଜେ ମୋତେ ନିଆଁ ଭିତରକୁ ଠେଲିଦେଇ, କିମିତି ଆଶା କରି ବସିଛ ଯେ, ଦେହରେ ମୋ ନିଆଁର ଉତ୍ତାପ, ସେ ଜ୍ୱାଳା ନ ଆଣି ମୁଁ ବିଜୟ ଗର୍ବରେ ଫେରିଆସି ତମ ପାଦ ତଳେ ହଜାର ହଜାର ଟଙ୍କା ଢାଳିଦେବି । ମୁଁ ଅଭିନୟ କରେ ସତ, କିନ୍ତୁ ସେ ଅଭିନୟର ସ୍ୱରୂପ କଣ ଜାଣ ? କହି ପାରିବ ତାର ଶେଷ କେଉଁଠି ? ଲକ୍ଷପତି ପୃଥ୍ବୀର ଟ୍ରେଜେରୀ ଖୋଲିବା ପୂର୍ବରୁ, ତା ଓଠ ସହିତ ମୋ ଓଠ ମିଶି ଯାଇଛି । ହାତକୁ ନୋଟ୍ ବଡ଼ାଟା ବଢ଼େଇ ଦବା ସଙ୍ଗେ ସଙ୍ଗେ ଶେଠ୍ ରଙ୍ଗଲାଲ ପାଗଳ ପରି ମୋର ଏ କଅଁଳ ହାତ ମୁଠାକୁ ଚିପି ଧରୁଛି । ତରୁଣ ବ୍ୟବସାୟୀ ସୁଜନସିଂ ଏ' ହାତରେ ଚେକ୍ ଖଣ୍ଡିକ ବଢ଼େଇ ଦେଇ, ସେ ହାତରେ ମୋ ଗଳା ଜଡ଼ାଇ ଧରୁଛି.........

ତୁଷାର—ପ୍ରଭା !

ପ୍ରଭା—( ତୁଷାର ପାଦ ଧରି ) ମୁଁ ତମ ପାଦ ଧରି ମିନତି କରୁଛି, ତମେ ମୋତେ ଏ ନର୍କରୁ ମୁକ୍ତ କର । ଚାଲ ଆମେ ଏଠା ଛାଡ଼ି, ଏ ସହର ଛାଡ଼ି କେଉଁ ଦୂର ପଲ୍ଲୀକୁ ଚାଲି [ଯିବା—ଚାଲ । ସେଇଠି ପର୍ଣ୍ଣ କୁଡ଼ିଆ ବାନ୍ଧି ରହିବା !

ତୁଷାର—ବୁଝିଲି ପ୍ରଭା, ଆମେ ଏଠୁ ଚାଲିଗଲେ ତମେ ପର୍ଣ୍ଣ-କୁଡ଼ିଆର ଦୁଃଖକୁ ଦୁଃଖ ବୋଲି ମଣିବ ନାହିଁ ।

ପ୍ରଭା—ନା, ସେଇ ହେବ ଆମର ପରମ ସ୍ୱର୍ଗ ।

ତୁଷାର—ମାନିଲି, ସେଠି ଆମେ ସ୍ୱର୍ଗ ସୁଖ ପାଇବା—ଆମ ଦାମ୍ପତ୍ୟ ଜୀବନ ଆନନ୍ଦରେ କଟିବ......

ପ୍ରଭା—ମୁଁ ତ ସେମାନଙ୍କ ଗୃହିଣୀ; ତାଙ୍କୁ ପଇଲେ ମୁଁ ସବୁ ପାଇଲି ।

ତୁଷାର—କିନ୍ତୁ ଯେଉଁ ହତଭାଗ୍ୟ ଅବଳାମାନଙ୍କୁ ଏଠି ଛାଡ଼ିଦେବା; ତାଙ୍କ ଦୁଃଖ ବୁଝିବ କିଏ ? ଅପଦାର୍ଥ ଦୂର୍ବଳ ? ଆମ ଦୁଇଜଣଙ୍କର ସୁଖ ପାଇଁ ଆମେ ଏତେ ଗୁଡ଼ାଏ ମହାପ୍ରାଣୀଙ୍କୁ ପାଦତଳେ ଦଳି ଦେଇ ଯିବା ? ସେମାନେ ନ ଖାଇ ନ ପିଇ ଏଇ ରାସ୍ତା ଧାରରେ ଛଟପଟ ହୋଇ ମରିବେ—କୁହ ପ୍ରଭା ?

ପ୍ରଭା—( ଉଠି ଠିଆହୋଇ ) ଏ ପ୍ରଶ୍ନର ଉତ୍ତର ମୁଁ ଦେଇ ପାରିବିନି । ତମେ ମୋର ସ୍ୱାମୀ ହୋଇ ତମର ଆଦର୍ଶକୁ ଯଦି ମୁଁ ଭାଙ୍ଗୁଥାଏ, ତେବେ ମୁଁ ତମର ସ୍ତ୍ରୀ ହୋଇ, ତୁମ କୁଳର ବୋହୂ ହୋଇ, ମୋର କି ଆଦର୍ଶ ତମେ ବଞ୍ଚେଇ ରଖୁଚ ?

ତୁଷାର—( କ୍ରୋଧ ଗଳାରେ ) ପ୍ରଭା !

ପ୍ରଭା—ଏଁ !

ତୁଷାର—ମୋର ସ୍ତ୍ରୀ ହୋଇ—ଆମ ବଂଶର କୁଳବଧୂ ହୋଇ ତମର ଯେଉଁ ଗର୍ବ ଅଛି, ସେ ଗର୍ବ ପଛରେ ଭାଙ୍ଗ—ମୁଁ ଅନେକଦିନ ପାଇ ଗୃହିଣୀ ଧନ । ତମେ ଅଭିନୟ କରି, ନୂଆଁ ସହର ଖେଳ ଖେଳି, ଆଣି ପ୍ରଚୁର ଧନ ଧନ । ହତଭାଗ୍ୟ ରୋଗୀ ଦୁଃଖୀମାନେ ଭୋକ ଉପାସରେ ରହିବେ—ଆଶ୍ରୟ ପାଇବାକୁ ଆଶା ମୁଖରେ ଚାହିଁ ଅଛି ଏଠି ନିରାଶ ହୋଇ ସେମାନେ ଫେରିଯିବେ—ଏ ଦୁଃଖ ମୁଁ ସହି ପାରିବିନି ପ୍ରଭା··· ମୁଁ ସେଇମାନଙ୍କ ପରି ଜଣେ ଅନ୍ଧ, ଅକ୍ଷମ, ନିରାଶ୍ରୟ ! ( ଆଖିରେ ଲୁହ )

ପ୍ରଭା—ତେବେ—ଏଇ ହିଁ ଜଣେ ସ୍ୱାମୀର ତା ସ୍ତ୍ରୀ ପ୍ରତି ଆଦେଶ ?

ତୁଷାର—ନା ପ୍ରଭୁ, ଏ ସ୍ୱାମୀର ଆଦେଶ ନୁହେଁ ! ଏ ଜଣେ ଅକ୍ଷମ ଅଷାରଗ ବନ୍ଧୁର ଚରମ ଅନୁନୟ, ପ୍ରାର୍ଥନା ! ବନ୍ଧୁର ଅନୁନୟ ତମେ ରକ୍ଷାକର ପ୍ରଭୁ—ପ୍ରଦୀପ ପରି ନିଜେ ଜଳି ଅନ୍ୟକୁ ବଞ୍ଚାଅ !

( ଅଶ୍ରାଳ ଅଶ୍ରାଳ ଗୃହଗଲ—କ୍ଷଣପ୍ରଭା ମୁହଁରେ ହାତଦେଇ କାନ୍ଦୁଥାଏ )

—ଦ୍ୱିତୀୟ ଅଙ୍କ ଶେଷ—

# ତୃତୀୟ ଅଙ୍କ

## ପ୍ରଥମ ଦୃଶ୍ୟ

( ଦୁଷ୍ମନ୍ତଘରର ଅଳିନ୍ଦ । କ୍ଷଣପ୍ରଭା ଓ ହେମାଙ୍ଗିନୀ ଆସିଲେ )

ହେମ—ଝିକେ ନଗେଲାରେ ଟେଣା' ସାଥିରେ ଦ'ଘଡ କଥା ହେବ ବୋଲି କୋଉଠି ସୁବିଧା ପାଉନ ।

ପ୍ରଭା—ଉପରକୁ ଚାଲ ।

ହେମ—ନା, ଉପରକୁ ଗଲେ ମୋର ଖାଲି ବୋଉଙ୍କ କଥା ମନେ ପଡୁଛି ।

ପ୍ରଭା—ବେଶ୍, କଣ କହୁଚୁ ଏଇଠି କହ ?

ହେମ—ଆଗେ ଗୋଟେ କଥାର ଉତ୍ତର ତୁ ମତେ ଦେ । ସ୍ୱା ପରେ ହବ କ'ଣ ? ଏ ସଂସାର କମିତି ଚାଲିବ ? ବୋଉ ମରିବାର ଆଜକୁ ଚଉଦଦିନ ହେଲା । ଏଇଠି ମୁଁ ଅଛି, ସବୁ ଦେଖୁଛି, ସବୁ ଶୁଣୁଛି—

ପ୍ରଭା—ହେମ ! ତୁ ଏ ଘରର ଝିଅ ! ଏ ପ୍ରଶ୍ନ ତୁ ମତେ ପଚ୍ଛୁଛୁ ତାହିଁକି ?

ହେମ—ଚାକର, ବାବର, ଗୁମାସ୍ତା, ପିଅଦାଙ୍କ କଥା ଛାଡ଼—ଘରର ମାଲିକ ଖୋଦ ଦୁଷ୍ମନ୍ତ ପଟ୍ଟନାଏକ—ଯାହାର ଅଜ୍ଞାରୁ

ମଥା ପାତି ମାନି ନେଉଛନ୍ତି—ଏ କଥା ତାକୁ ନ ପଚାରି କାହାକୁ ପଚାରିବ ? ବୋଉର ଏଗାରଧନ ଜଣ ଗୋଟେ ପାଣିକୁ ଦାନ କରିବେ ବୋଲି ଭାଇ ଯିମିତି ଉକାଶିଙ୍କ ଯବ ତୋ ପାଖରେ ଆସି ହାତପାତି ଠିଆ ହେଲେ—

ପ୍ରଭୁ—ତୋତେ ହାତଯୋଡ଼ି ନେହୁରା ହେଉଚି ହେମ; ଏକଥା ତୁ ମୋତେ କହନା । ତୋ ବୋଉ ଆଜ ମରି ସ୍ୱର୍ଗରେ । ସେଇ ଜାଣନ୍ତି, କାହିଁକି ସେ ମୋତେ ମୋ କୁଡ଼ିଆରୁ ଏ ରାଜମହଲକୁ ଟାଣି ଆଣିଲେ, କାହିଁକି ମୋ ଉପରେ ଏ ଜଞ୍ଜାଳ ସେ ଲଦି ଦେଲେ । ତାଙ୍କର ଆଦେଶରେ ମୁଁ ଆଜଯାଏଁ ଦେବତାଙ୍କ ଆଦେଶ ପରି ମାନି ଚଳୁଚି । ସେ ଦିନର ସେ କଥା କେଇପଦ ତାଙ୍କର ଆଜବି ମୋ କାନରେ ବାଜି ଉଠୁଚି "ତୋ ମାଆକୁ ତୁ ଭୁଲିଗଲୁ ।" (ଯଷ୍ଟପ୍ରଭୁର ଆଖିରେ ଲୁହ । ହେମାଙ୍ଗିନୀର ଆଖିରେ ଉଦ୍ବେଗ-ପୂର୍ଣ୍ଣ ଗୃହାଣୀ )

ହେମ—ଗୋଟେ କଥା ପଚାରିବ ପ୍ରଭୁ ?

ପ୍ରଭୁ—କଣ ?

ହେମ—ଅଭିଗୁଣ ଧାଇବୁ ନାହିଁ ।

ପ୍ରଭୁ—ତା ହେଲେ, ଏ ଯାଏଁ ମୁଁ ବଞ୍ଚି ନଥା'ନ୍ତି । ଏକା ତୋ କଥା କାହିଁକି, ଏ ଦୁନିଆଁର ସବୁ କଥାକୁ ମୁଁ ମୋ ମନରୁ ପଥର କରି ଦେଇଚି ।

ହେମ—ତୋ ବାପା କଣ ତୋ ଖବର କିଛି ନିଅନ୍ତି ନାହିଁ—ତୋ ପାଖକୁ ଚିଠି ପତ୍ର କିଛି ଦିଅନ୍ତି ନାହିଁ ?

ପ୍ରଭୁ—ନା—

ହେମ—କାହିଁକି ?

ପ୍ରଭା—ବୋଧେ ସେ ମୋତେ ଘୃଣା କରନ୍ତି । ଲକ୍ଷପତି ଜମିଦାର ସେ—ତାଙ୍କ କଥା ନ ମାନି ମୁଁ ଦରିଦ୍ର ଚୂଡ଼ାମଣିଙ୍କୁ ବିବାହ କରିଥିଲି—ସେଇଥିପାଇଁ ।

ହେମ—ତୋ ବୋଉ ? ତୋ'ର ସେ ସାବତ ବୋଉ ନା !

ପ୍ରଭା—ହଁ, ସିଏ ବି'ତ ମୋ ଖବର ନିଏନି ।

ହେମ—ଖବର କାଗଜରୁ ପଢ଼ିଲି, ତୋ ବାପା ତାଙ୍କର ସବୁ ସମ୍ପତ୍ତି ଟା ବାଲ୍ଲଙ୍କ ହାତରେ ଛାଡ଼ି ଦେଇଛନ୍ତି, ନିଜପାଇଁ ବାଉ ଗୋଟିରେ ଗୋଟିଏ ବ ରଖି ନାହାନ୍ତି, ସତ !

ପ୍ରଭା—ସତ । ଜୀବନଯାକ ଯିଏ ପତ୍ନୀ ପିଣ୍ଡାରୁ ତଳକୁ ଓହ୍ଲେଇ ନଥିଲେ, ଆଜି ସେ ନିଜ ପେଟ ପାଇଁ ଗାଁର ଅଣ୍ଡ ପାଞ୍ଚଜଣଙ୍କ ସାଥିରେ ଦା' ଧରି ବିଲ ବାଡ଼ିରେ ଦିନ—ହଳ କରୁଛନ୍ତି ।

ହେମ—ଏତେବୈରାଗ୍ୟ କାହିଁକି, ତୁ ଜାଣୁ ?

ପ୍ରଭା—ବୈରାଗ୍ୟ ! ଠିକ୍ କହି ପାରିବନି । ହୁଏତ ଯୁଗ ବଦଳିଲା ବୋଲି ମନ ବଦଳିଛି । ନାହିଁତ ମୋ ସାବତ ମା'ର ଦେଢ଼ବରଷର ପୁଅ ମରିଗଲା ବୋଲି, ବାପା ମନ ଦୁଃଖରେ ଏ ପନ୍ଥା ଧରିଛନ୍ତି । ବୋଉ ଏ ଦୁଃଖ ସହି ନ ପାରି, ତା ବାପ ଘରକୁ ଚାଲିଗଲା—ଶୁଣିଲି ସେଠି ଗୋଟିଏ "ଶିଶୁସଦନ" ଖୋଲିଛି ।

ହେମ—ତା ହେଲେ ପ୍ରଭା, ତୁ ଏଇ ଗୋଟାଏ କଥା ବିଚାର କର । ପୁତ୍ର ଶୋକ ପାଇଥିଲେ ବୋଲି ତୋ ବାପା ସିନା ତାଙ୍କ ସମ୍ପତ୍ତି ଟା ବାଲ୍ଲଙ୍କୁ ଛାଡ଼ି ଦେଲେ । ଭାଇ ତ ନାହିଁ, କି ଦୁଃଖରେ ସଂସାର ନ କରି ତାଙ୍କ ସମ୍ପତ୍ତି ଜଙ୍ଗଲରେ ଦେଉଛନ୍ତି !

ପ୍ରଭା—ଏ ପ୍ରଶ୍ନ ତୁ ଆଜି ମୋତେ ପଚାରୁଛୁ ହେମ ?

ହେମ—ଏହାର ମୀମାଂସା ନ ହେବା ପର୍ଯ୍ୟନ୍ତ ଇମିତ ପଚାର ଚାଲିଥିବ । ଜୀବନରେ ଭାଇ ଏକା ତୋତେଇ ଭଲ ପାଇଥିଲେ । ତୋତେ ବିବାହ କରିଥିଲେ, ସେ କଣ କେତେବେଳେ ଅତୁଳନୀୟ ଧନଦଉଲତର ମୋହ ଛାଡ଼ି ଏ ସନ୍ନ୍ୟାସକୁ ଓଟେଇ ଆସିଥାନ୍ତେ ? କେବଳ ତୋରିପାଇଁ ଆଜି ସେ ଯୌବନରେ ଯୋଗୀ ସାଜିଛନ୍ତି । କହ, ମୋ କଥା ସତ କି ମିଛ ?

ପ୍ରଭା—ଏହା'ର କି ଉତ୍ତର ମୁଁ ତୋତେ ଦେବି ହେମ ?

ହେମ—କି ଉତ୍ତର ଦବୁ, ସେ କଥା ତୁ ବେଶ୍ ଜାଣୁ । ଆଜି ଉତ୍ତର ଦେଇ ପାରୁନୁ କାହିଁକି, ତା'ର ମୁଁ ବେଶ୍ ଜାଣେ । ତୁ ମୋର ବନ୍ଧୁ ପ୍ରଭା—ମୁଁ ତୋତେ ଆଘାତ ଦେବାକୁ ଏ କଥା କହୁନି । ମୁଁ ଭଲଭାବେ ଜାଣେ, ତୁ କହିଲେ ଭାଇଙ୍କ ମନ ବଦଳି ଯିବ । ତୁ କହିଲେ ସେ ବିବାହପାଇଁ ରାଜି ହେବେ ।

ପ୍ରଭା—ମୁଁ ତା'ହେଲେ କହିବି ହେମ—ଭଉଣୀ ହେଇ ବି ତୋ ଭାଇଙ୍କି ତୁ ଏ ଯାଏଁ ଚିହ୍ନିପାରିଲୁ ନାହିଁ ?

ହେମ—ମୁଁ ଚିହ୍ନିଛି, ଠିକ୍ ଚିହ୍ନିଛି । ତୁ ଜିଦ୍‌ଧରି ବସିଲେ ସେ ଅରାଜି ହେବେନି—ଆଉ କନ୍ୟା ପାଇଁକି ଖୋଜାବୁଲିବାକୁ ପଡ଼ିବ ନାହିଁ । ମୋର ଇଚ୍ଛା, ତୁ ନିଜ ପାଇଁ ପ୍ରସ୍ତାବ କର ।

ପ୍ରଭା—ତୁ ମିଛରେ ଲୋଭ ଦେଖେଇ ମୋତେ ପରୀକ୍ଷା କରୁଛୁ ହେମ ! କିନ୍ତୁ ଫଳ ହେବନି । ମୁଁ ଜାଣେ, ସେ ବିବାହ କରିବେନି ।

ହେମ—ତୁ ଚେଷ୍ଟା କରିବୁ ନାହିଁ ?

ପ୍ରଭା—ଦୁଷ୍ମନ୍ତବାବୁ ଡାକ୍ତର ଲୋକ, ସବୁଠୁ ବେଶି ସୁଖୀ ହୁଅନ୍ତି ମୁଁ । କିନ୍ତୁ ହେମ, ଡାକ୍ତରସାମ୍ନାରେ ତାଙ୍କୁ ମୁଁ ଅନୁରୋଧ କରିପାରିବିନି । ମୋଠୁ ଏ କଥା ଶୁଣିଲେ, ସେ ଯଦି... ଯଦି, ଅସହାୟ କରୁଣ ଦୃଷ୍ଟିରେ ମୋ ମୁହଁକୁ ଚାହିଁ ରହନ୍ତି......?

ହେମ—ସବୁକଥା ତୁ ତାଙ୍କୁ ବୁଝାଇଦବୁ ।

ପ୍ରଭା—ନା ହେମ—ମୁଁ ପାରିବିନି । କୌଣସି କଥା ମୁଁ ତାଙ୍କୁ ବୁଝାଇ ପାରିବିନି ।

ହେମ—କାହିଁକି ପାରିବୁ ନାହିଁ ? ତମ ଦୁହିଁଙ୍କ ମଙ୍ଗଳ ପାଇଁ ଯାହାଠାରୁ ତୁ ଶରଧନ ହୃଦରେ ରଖିବାର କଥା—ତା ସହିତ ଆଜି ପୁଣି କି ସମ୍ପର୍କ ଅଛି ବୋଲି ତୁ ତାଙ୍କୁ ସବୁକଥା ଖୋଲି କହି ପାରିବୁନି---? କହ କି ସମ୍ପର୍କ ଅଛି ? ---କି ସମ୍ପର୍କ ଥାଇପାରେ ?

ପ୍ରଭା—ସମ୍ବନ୍ଧ ଅଛି ହେମ...... ।

ହେମ—ସମ୍ପର୍କ ଅଛି ? ଏ କଥା ମୁଁ ତୋଠୁ ଶୁଣୁଛି ପ୍ରଭା—ତୁମାର କାନ୍ତ ପଟ୍ଟନାୟକଙ୍କ ସ୍ତ୍ରୀ ଝଣପ୍ରଭାଠୁ ଶୁଣୁଛି ?

ପ୍ରଭା—ତୁମାର କାନ୍ତ ଆଉ ଦୁଷ୍ମନ୍ତ ଦୁଇବନ୍ଧୁ । ଦୁହେଁ ସାଧାରଣ ମଣିଷଙ୍କର ବହୁ ଉର୍ଦ୍ଧରେ । ଦୁହେଁ ମୋର ଅତି ପ୍ରିୟ । ଜଣେ ମୋର ସ୍ୱାମୀ, ଅନ୍ୟଜଣକ ସ୍ୱାମୀଠୁ ଅଧିକ ବଡ଼ । ସେ ମୋର କିଏ, ସେ କଥା ବୁଝାଇବା ପାଇଁ କେଉଁ ଶବ୍ଦ ମୁଁ ବ୍ୟବହାର କରିବି—ତା ମୁଁ ଜାଣେନା ।

ହେମ—ତୋ ମୁହଁରେ ଲାଜ ଥିଲେ ତୁ ଏକଥା କହନ୍ତୁନି ପ୍ରଭା । ଏଠି କଥା ଜଟିଳ—ପର ପତିକାରେ କଦା,

ଅପରାଧର ସୀମା ରହିଲା ନାହିଁ—ତଥାପି ତୋର ଶାନ୍ତ ହୃଦୟ ଦେଖିକି--- । ଚୋଲର ଆଦେଶ ମାଜ ଚଳୁଚୁ ବୋଲି କହୁଥିଲୁ, ନା ? ତୋର ମନେଥିବ---ରେ ଶେଷ ମଲାବେଳକୁ ମାତ୍ର ଗୋଟିଏ ପଦ କଥା କହୁଥିଲା--- ତନୋଟି ଅକ୍ଷର —"ଦୁଷ୍ମନ୍ତ" । ଏଇଥିରୁ ତାର ସବୁ ଆଦର୍ଶ ଜ୍ଞ ବୁଝି ପାରିଲା ଭଳି ବୁଦ୍ଧି ତୋର ଅଛି ବୋଲି ମୋର ବିଶ୍ୱାସ । ବୁଝିଲୁ ! ମୁଁ ଯାଉଛି ।

( ଯଣପ୍ରଭାକୁ କବାଟ କରି ଦେଇ ଗୃଲଗଲେ । ଲୁହଭରା ଆଖିରେ ଯଣପ୍ରଭା ସେଇଠି ଠିଆ ହୋଇଥାଏ )

ମୀର—( ବାହାରୁ )-ନୂଆବୋଉ—ନୂଆବୋଉ—କୁଆଡ଼େ ଗଲ ନୂଆବୋଉ ?

ପ୍ରଭା—( ଲୁହପୋଛି ) --ଏଇଠିକି ଅସ ମୀର--( ମୀର ଆସିଲା )

ମୀର—ନୂଆବୋଉ, ତମେ ଏଠି ? ମୁଁ ତୁମକୁ ତେଣେ ଖୋଜୁଚି ଭାଇ ପଗ୍ଲୁଚନ୍ତି ଆଜ କଣ ଅଡ଼ାମ୍ ମିଆଁଘରେ ମେଞ୍ଚିଙ୍ଗ ଥିଲା — ପୁଣି ଅବନୀ ବାବୁଙ୍କ ଘରକୁ କୁଆଡ଼େ ଯିବାର କଥା--କେତେବେଳେ ଯିବ ? ଇଏ କଣି ନୂଆବୋଉ—ତୁମେ କାନ୍ଦୁଛ ? କାହିଁକି କାନ୍ଦୁଛ ନୂଆବୋଉ ?

ପ୍ରଭା—ତମ ଭାଇ କାହାନ୍ତି ମୀର ?

ମୀର—ଲାଇବ୍ରେରୀରେ—

ପ୍ରଭା—ଦୁଷ୍ମନ୍ତବାବୁ ?

ମୀର—ତାଙ୍କ ଘରେ ଥିବେ ।

ପ୍ରଭା —ଗୃଲ ।

ମୀର—ନାହିଁ ତମେ ଆଗେ କୁହ,--ମୋ ରାଣ କୁହ । ତମେ
କାହିଁକି କାନ୍ଦୁଥିଲ ?

ପ୍ରଭା—ଆଉ କାନ୍ଦିବି ନାହିଁ ମୀର--ଏଣିକି କେବଳ ହସିବି ।
ନିଜେ ହସି ଅନ୍ୟଙ୍କୁ ହସାଇବି । ପୃଥିବୀର ବକ୍ଷରେ
ଝଙ୍କାର--ଭିତରେ ନିଆଁ ଜଳିବ—ବାହାର ଝଙ୍କା—
ସେଇ ଝଙ୍କା, ସେଇ ଜଳନ୍ତା ନିଆଁ ଭିତରେ ମୁଁ
ହସି ହସି ଜ୍ୱଳିଯିବି ।

ମୀର—ଏ ସବୁ କଣ ତୁମେ କହୁଯାଉଛ ନୂଆବୋଉ ?

ପ୍ରଭା—( ହସି ) -କିଛିନୁହେଁ ମୀର--ତମେ ଯାଅ ।

ମୀର—ଆଜି ତମେ କୁଆଡ଼େ ଯିବ ?

ପ୍ରଭା—କୁଆଡ଼େ ଯିବାର କଥା --ତମ ଭାଇଙ୍କଠୁ ମୋ ପ୍ରୋଗ୍ରାମ
ଶୁଣିଥିଲ ପରା ?

ମୀର— ନାହିଁ ନୂଆବୋଉ, ତମ କଥା ଶୁଣି ମୋତେ ଖାଲି ଡର
ମାଡୁଛି—ତମେ ଆଜି କୁଆଡ଼େ ଯାଅନି ।

ପ୍ରଭା—କୁଆଡ଼େ ଯିବନି ?

ମୀର—ନା—

ପ୍ରଭା—( ଆଦରକରି ) ଭଲ କଥା କହୁଚ ମୀର, ମୁଁ କୁଆଡ଼େ
ଯିବନି, ତମେତ ପଢିବାକୁ ଯାଅନି । ଚାଲ ଆମେ ଦୁହେଁ
ବସି ମନ ଇଚ୍ଛା ଗପ କରିବା—

ମୀର—ଆଚ୍ଛା, ନୂଆବୋଉ, ଆମକୁ ଯିଏ ଏଠିକି ଆଣିଥିଲେ
ସିଏତ ଆଉ ନାହାନ୍ତି—ଆମେ ଆଉ ଏଠି ରହିବା
କାହିଁକି ?

ପ୍ରଭା—ଆମେ ଏଠୁ ଚାଲିଯିବା ମୀର ? କୁଆଡ଼େ ଯିବା ?
ଜମିଦାର ପରିସ୍ଥିତ ଘଟନାଏତ ତାଙ୍କର ସବୁ ଝଗଡ଼ି

ଗାଁ ବାଲାଙ୍କ ହାତରେ ଛାଡ଼ିଦେଇଛନ୍ତି—ତାଙ୍କ ସ୍ତ୍ରୀ ଗାବଂଶୀ ଦେଇ ଶିଶୁସଦନ ଖୋଲିଛନ୍ତି । ସେଇଠିକି ଗ୍ଚାଲିଯିବା ... ?

ମୀର—ଏ ସବୁ ତମେ କଣ କହୁଚ ନୂଆବୋଉ—ମୁଁ କିଛୁ ବୁଝିପାରୁନ—ମୋ ମୁଣ୍ଡ ଗୋଳମାଳ ହେଇ ଯାଉଚି ।

ପ୍ରଭା—( ପ୍ରକୃତିସ୍ଥାହୋଇ ) ତମେ ଚାଲ ମୀର, ଏଠିକି ଚାଲ । ଦୁଷ୍ମନ୍ତବାବୁଙ୍କ ଔଷଧ ଖିଆ ବେଳ ହୋଇଗଲାଣି ; ତାଙ୍କୁ ଔଷଧ ଦେଇ ମୁଁ ମୋ କାମରେ ଯିବି, ଚାଲ ।

**—ପରଦା—**

## ଦ୍ୱିତୀୟ ଦୃଶ୍ୟ ।

( ଅବନୀ ବାବୁଙ୍କ ଘର, ସମୟ ସନ୍ଧ୍ୟା, ଅବନୀ ବାବୁ ଗୋପାଳ ବାବୁ ଏବଂ ରଙ୍ଗଲାଲ୍ ଆଲୋଚନାରେ ରତ )

ଗୋପାଳ—ନା, ଅବନୀବାବୁ ! ଆପଣଙ୍କ କଥାରେ ମୁଁ ଏକମତ ନୁହେଁ । ପରଶୁରାମ ବାବୁ ପାଗଳ ନୁହନ୍ତି କି ସ୍ୱପ୍ନବାଦୀ ନୁହନ୍ତି ।

ଅବନୀ—କିନ୍ତୁ ଆପଣ ତାଙ୍କୁ ସମର୍ଥନ କରୁଚନ୍ତି କପରି ? ଆପଣମାନେ ସମସ୍ତଙ୍କୁ ମାରିପିଟି ଗୁଣ୍ଡା ଭଳି ଯେଉଁ ସାମ୍ୟବାଦ ଆଣିବାକୁ ଚେଷ୍ଟା କରୁଚନ୍ତି, ପଶୁରାମ ସେ ଅତି ଶାନ୍ତିପୂର୍ଣ୍ଣଭାବରେ ଠିକ୍ ସେଇ ଆଡ଼କୁ ଆଗେଇଚନ୍ତି । ସେ ଯିତିଗଲେ ଆପଣମାନେ ହାରିଯିବେ । ଆପଣମାନଙ୍କ ମାତି ଫେଲ୍ ମାରିବ ।

ଗୋପାଳ—ମୋଟେ ନୁହେଁ--ମୋଟେ ନୁହେଁ । ଆମେ ଭଦ୍ର-ବାଟରେ ଗ୍ଳଳଚୁ ସତ, କିନ୍ତୁ ଆମର ଲକ୍ଷ ଯେ ଏକ୍ । ଆମେ ମନ୍ତ୍ରୀଙ୍କର ଯେଉଁ ପରିବର୍ତ୍ତନ ଗ୍ଭହୁଁ, ପରଶୁରାମ ବାବୁ ଠିକ୍ ସେଇ ପରିବର୍ତ୍ତନ ଗୃହାନ୍ତି ।

ରଙ୍ଗଲାଲ—ଆପଣ ପୁଣି କୋନ୍ ପରଶୁରାମବାବୁଙ୍କ କଥା କହୁଚନ୍ତି ?

ଗୋପାଳ—ଝଞ୍ଜପୁର ଜମିଦାର ପରଶୁରାମ ପଟ୍ଟନାଏକ—ଲକ୍ଷପତି ଜମିଦାର ଥିଲେ ।

ରଙ୍ଗଲାଲ—ଏଁ—ଇତ୍ନା ବଡ଼ା ଜମିଦାର—ଲାଖ୍ପତି ?

ଗୋପାଳ—ହେ ଭଗବାନ ! ଆପଣମାନଙ୍କ ଛଡ଼ା ଆଜକେହୁ ଲକ୍ଷପତି ହେଉ--, ଏ କଥା କଣ ଆପଣ ଗୃହାନ୍ତି ନାହିଁ ସେଠ୍ଜୀ ?

ରଙ୍ଗଲାଲ—(ହସି) ରାମ୍ ରାମ୍ ! ଏ କଣ କଥା ଆପଣ କହୁଚନ୍ତି ଗୋପାଲବାବୁ ! ମୁଁ କହୁଥିଲି ଇତ୍ନା ବଡ଼ା ଜମିଦାର୍, ଏତେ ସଂପତ୍ତି, ସବୁ ଦାନ୍ କରିଦେଲେ ?

ଗୋପାଳ—ବିଲକୁଲ୍ । ତାଙ୍କର ନିଜର ଆଜ ଇଞ୍ଚେ ବୋଲି ଜମି ନାହିଁ । ସେ ବର୍ତ୍ତମାନ ତାଙ୍କ ପ୍ରଜାମାନଙ୍କ ଭିତରୁ ଜଣେ । ଆଜ ପାଞ୍ଚଜଣଙ୍କ ପରି ନିଜେ ଖଟି ନିଜେ ପେଟ ପୋଷୁଛନ୍ତି ।

ଅବନୀ—ଆପଣ ଜାଣନ୍ତି ସେଠ ଜୀ, ଏ ପରଶୁରାମ ବାବୁ କିଏ ? ପ୍ରଭାଦେବୀଙ୍କ ବାପା ।

ରଙ୍ଗଲାଲ—କୋନ , ପ୍ରଭାଦେବୀ ?

ଗୋପାଳ—ଝଣପ୍ରଭା ଦେବୀ ।

ରଙ୍ଗଲାଲ—ଓ, ଆମ ଦୁଷ୍ମନ୍ତବାବୁଙ୍କ ଝଣପ୍ରଭାଦେବୀ ?

ଗୋପାଳ—(ବିରକ୍ତିରେ) ମାନେ ?

ରଙ୍ଗଲାଲ—ମାନେ—ଦୁଷ୍ମନ୍ତବାବୁର କପାଳ ଭେଙ୍କ । କ୍ଷଣପ୍ରଭାଦେବୀ ତାଙ୍କୁ ମଦତ ଦେଇ ନଥିଲେ, ତାଙ୍କ ଇସ୍କୀମ କଣ ଗୁଲ ହୋଇ ଥାନ୍ତା । ହଜାର ହଜାର ଟଙ୍କା ଗୁନ୍ଦା ଉଠାନ୍ତା କଏ !

ଗୋପାଳ—ଆପଣ କ୍ଷଣପ୍ରଭାଦେବୀଙ୍କୁ ପ୍ରଶଂସା କରୁଛନ୍ତି ନା ପରିହାସ କରୁଛନ୍ତି ?

ଅବନୀ—କ୍ଷମା କରନ୍ତୁ ଗୋପାଳବାବୁ—ଜଣେ ଭଦ୍ରମହିଳାଙ୍କ ସମ୍ବନ୍ଧରେ ଏଠି, ଏ ଆଲୋଚନା······

ଗୋପାଳ—ସେ ପାଇଁ ମୁଁ ଦୁଃଖିତ ଅବନୀବାବୁ । କିନ୍ତୁ ଶେଠଜୀଙ୍କୁ ମୁଁ ପଚେ ନଜର ରହୁ ପାରୁନ ବୁଝିଲ ଶେଠଜୀ— କ୍ଷଣପ୍ରଭାଦେବୀଙ୍କ ସାଧନା ପାଇଁ ମୁଁ ପ୍ରତିଦନ ସକାଳୁ ଉଠି ଭଗବାନଙ୍କୁ ଭୁଲି, ତାଙ୍କ ଉଦ୍ଦେଶ୍ୟରେ ହାତ ଯୋଡ଼ି ପ୍ରଣାମ କରେ । କିନ୍ତୁ ଆପଣମାନଙ୍କ ପରି ନେତୀମାନେ, ଅନ୍ଧ, ଅକ୍ଷମମାନଙ୍କୁ ହାତଟେକି ଧଇଁପାଟିଏର ଭିକ୍ଷା ଦେବେ ନାହିଁ, ଅଥଚ ସେଇମାନଙ୍କ ପାଇଁ ଜଣେ ସୁନ୍ଦରୀ ଯୁବତୀ ଭିକ୍ଷା ଗୁହିଁଲେ ହଜାର ହଜାର ଟଙ୍କା ଢାଳିଦେବେ, ମୁଁ ଗୁହେଁ, ସେଇ ପଶୁମାନଙ୍କୁ ଧନଦଉଲତ ଭିତରୁ ଟାଣି ଆଣି, ସେମାନଙ୍କ ଆଖି ଫୁଟେଇ, ହାତଗୋଡ଼ କାଟି, ଚିର୍ମିତ ଅକ୍ଷମ, ପଙ୍ଗୁଙ୍କର ଗୁଡ଼ଦଅପାଜ । ତା'ହେଲେ ଦାନ କରିବା ନାଁରେ ଆଉ ଇମିତ ଉଣ୍ଡାମି କରିବାର ସାହସ କେହି କରି ପାରିବେ ନାହିଁ ।

ରଙ୍ଗଲାଲ—ଦେଖୁଛନ୍ତି ଅବଣୀବାବୁ, ଇଏ କମିତ ଭଦ୍ରଲୋକ ଦେଖୁଛନ୍ତି ?

ଗୋପାଳ—ଆପଣ ପଚ୍ଛିଆ ଜଙ୍ଗଲର ବାଘ ହେଲେ ସିଏତ ଚନ୍ଦକା ବଣର ଭାଲୁ । ଆପଣ ତାଙ୍କୁ ଜଣ ସାକ୍ଷୀ ମାନୁଚନ୍ତି !

ଅରମା—ଆପଣ ବୁଦ୍ଧିଙ୍କର ବସ୍ତୁର ମୋ ପାଖରେ ଏକାବେଳେକେ ମୂଲ୍ୟହୀନ ହେଲେ ସୁଦ୍ଧା, ମୁଁ ଆପଣଙ୍କୁ କହୁ ରଖୁଛି ଗୋପାଳ ବାବୁ—ଷଣ୍ଡେଶ୍ୱରଙ୍କୁ ମୁଁ ସବୁବେଳେ ଖାଲି ହାତରେ ଫେରେଇଛି । ତାଙ୍କୁ ପଇସାଟିଏ ଚାନ୍ଦା ଦେଇନି କି ଦେବନି ।

ଗୋପାଳ—ନ ଦେଇ ଯେ ଆପଣ ଖୁବ୍ ଗୋଟେ ବାହାଦୁରି କାମ କରିଚନ୍ତି, ତା ନୁହେଁ । ଆପଣଙ୍କର ଚାନ୍ଦା ନ ଦେବାର କାରଣ ଭିନ୍ନ ।

ଝଙ୍କଲ—ଲେକିନ ଗୋପାଳବାବୁ, ଷଣ୍ଡେଶ୍ୱରଦେବଙ୍କୁ ଚାନ୍ଦା ଦେଇ ମୁଁ କ'ଣ ଭୁଲ କରିଛି, ବତାଇଏ !

ଗୋପାଳ—ମୁଁ ଅଉ କଣ ବଟେଇବ ଶେଠଜୀ !—ମୁଁ ଆପଣଙ୍କ ଚାନ୍ଦା ଦବାଟାକୁ ଦୋଷ ଦେଉନି କି ଷଣ୍ଡେଶ୍ୱରଙ୍କୁ ଦୋଷ ଦେଉନି । ମୁଁ ଭାବୁଛି, ଜଣେ ସୁନ୍ଦରୀ ତରୁଣୀ ପାଖରେ ଆପଣମାନଙ୍କର ସିଂହବୃତ୍ତ ମୂଷା ଅବତାର ହେଇଯିବାର କଥା ।

ଅରମା—ଶୁଣନ୍ତୁ ଗୋପାଳ ବାବୁ ! ବର୍ତ୍ତମାନ ଆମର କଥା ପଡ଼ୁ । ଏଇ ଭେଟେରେଦନ ଦେଶ୍ ସୁରୁଗୁରୁରେ ମିଲ୍ ଜାମ ଚାଲିଥିଲା । ବର୍ତ୍ତମାନ ଶ୍ରମିକମାନେ ଯେ ପୁଣି ଧର୍ମଘଟ ନୋଟିସ ଦେଲେଣି, ଏଇଟା କ'ଣ ଠିକ୍ ହଉଛି, ପୁଣି ଏ ଅସମୟରେ ?

ଗୋପାଳ—ଆପଣ ମିଲ୍ ମାଲିକ ସଂଘର ସଭାପତି । ଆଉ ଜଣେ

ମିଲ୍‌ମାଲିକ ଙ୍କ ଣ୍ଠ ଏଠି ଅଛନ୍ତି । ଆପଣମାନେ ସଭ ନର୍ଭର ଜବାବ ଦେବେ ଯେ, ଲଭର ଶତକରା ପାଠିଏ ଭାଗ ଶ୍ରମିକମାନଙ୍କୁ ବୋନସ ଦିଆଯିବ ।

ରଙ୍ଗଲାଲ—ପାଠିଏ କାହିଁକି, ଶତକରା ଶହେ ନେଇ ତା'ଉପରେ ଅଉ ପାଞ୍ଚ ଦଶ ଭାଗ ନଅନ୍ତୁ ! ଆମେ ସବୁ ତୋର ଭଙ୍ଗପୁରୀ ପିନ୍ଧି ଧବଳେଶ୍ୱରରେ ପଣ୍ଡା ମାରି ରହିବୁ । ଶତକରା ପାଠିଏ ଭାଗ ! କାହିଁକି ? ଶ୍ରମିକମାନେ ତ ହକ ଖଟିଲେ—ମଜୁରି ନେଲେ, ଲାଭ ସେମାନେ ନେବେ କାହିଁକି ? ଲାଭର ହକଦାର ଯଦି କେହି ଥାଏ, ତେବେ ସେ ହକର ଖାତକି, ଯିଏ କଷ୍ଟ ପଇସା ଦେଇ ଆମଠୁ ମାଲ କିଣୁଚନ୍ତି ।

ଗୋପାଳ—ଶେଠ୍‌ଜୀ !

ଅବନୀ—ଶେଠ୍‌ଜୀ ଠିକ୍ କହୁଚନ୍ତି ଗୋପାଳ ବାବୁ । ଲାଭର ପ୍ରକୃତ ହକଦାର ହେଉଚନ୍ତି ଗାହକିମାନେ । ମୁଁ ତ ଭାବୁଚି, ଶ୍ରମିକମାନଙ୍କ ବୋନସ କମେଇ ଦେଇ, ଜିନସର ଦର କମେଇ ଦେଲେ, ଦେଶର ଲକ୍ଷ ଲକ୍ଷ ଗାହକିମାନଙ୍କର ମଙ୍ଗଳ ହେବ ।

ଗୋପାଳ—ଏ ସବୁ ଧୂଆଁବାଣ ଫୁଟାଇ ଶ୍ରମିକମାନଙ୍କ ତଣ୍ଟି ଚିପି ଦିଅନ୍ତୁ ନାହିଁ । ସେମାନଙ୍କର ଗରମ ନିଶ୍ୱାସ ଆଜି ଅଗିର ନିଆଁରେ ଆପଣମାନେ ଜଳି ପୋଡ଼ି ଧ୍ୱଂସ ହୋଇ ଯିବେ ।

ରଙ୍ଗଲାଲ—ଖୁବ୍ ଦେଖିଚି ! ବଙ୍ଗଳାର ଦୁର୍ଭିକ୍ଷ କଥା ମନେ ଅଛି ତ ! ଲକ୍ଷ ଲକ୍ଷ ଲୋକ ମଲେ, ସେମାନଙ୍କର ଗରମ ନିଶ୍ୱାସ ତ କାହାର ଉପରେ ପଡ଼ିଲା ନାହିଁ ?

ଗୋପାଳ— ଯୁଗ ବଦଳି ଗଲଣି ଶେଠ୍‌ଜୀ, ଠେଙ୍ଗା କପଣ୍ଡ ଧରିବାକୁ ନୂଏ ଲୋକେ ବୁଦ୍ଧିମାନ ଶିଖିଲେଣି ।

ଅବନୀ—ବୁଝିଲେ ଗୋପାଳ ବାବୁ, ଆପଣ ମୋର ବନ୍ଧୁ ! ସେଇ ଅଧିକାରରେ ମୁଁ ଆପଣଙ୍କୁ ନିର୍ବୋଧ ବୋଲି କହୁଛି ! ଠେଙ୍ଗା ଧରିବାକୁ ହେଲେ ପ୍ରଥମେ ହାତର ମୁଠା ଶକ୍ତ କରିବା ଦରକାର । ନଇଲେ ନିଜ ଠେଙ୍ଗା ନିଜ ମଥାରେ ପଡ଼ିବ । ଆପଣ ଏଠା ଗ୍ରାମ୍ୟ ମଫସଲ ଯାଆନ୍ତୁ, ସେଠି ଆପଣଙ୍କର ଏ ଲେକ୍‌ଚର ଶୁଣି ଲୋକେ ବାହାବା' କରିବେ ।

ଗୋପାଳ—ଯାଉଛି । ଏଇ ଦ'ଦିନ ଭିତରେ ମୁଁ ଚାଲିଯିବି ଯାଉଛି । ପରଶୁରାମ ଚକ୍ରଧରଙ୍କର ନୂଆ ପରୀକ୍ଷା । ଭୂମିଦାନ, ସମ୍ପତ୍ତି ଦାନ, ନିଜ ଆଖିରେ ଯାଇଁ ଦେଖିବି ।

ରଙ୍ଗଲାଲ—ସତ୍ ଗୋପାଳ ବାବୁ, ଆପଣ ସତରେ ଗ୍ରାମ୍ୟ ମଫସଲ ଯାଉଛନ୍ତି ?

ଗୋପାଳ—ଯାଉଛି ।

ରଙ୍ଗଲାଲ—ସେଇଠି ରହିବେ, ଆଉ ଫେରିବେନି ?

ଗୋପାଳ—(ହସି) ମୁଁ ନ ଫେରିଲେ ବି ଏ ଠେଙ୍ଗା ଫେରିଆସିବ । ଅବନୀ ବାବୁ ଯାହା କହୁଛନ୍ତି, ଏ ଠେଙ୍ଗା ଦୋହଲାଇବା ! ମଫସଲରୁ ଆରମ୍ଭ ହେବା ଉଚିତ । ଅଚ୍ଛା, ମୁଁ ଆସେ ।

( ଉଠିଲେ )

ଅବନୀ—ତା' ହେଲେ ?

ଗୋପାଳ—କିଛି ନାହିଁ, କିଛି ନାହିଁ ! ଆପଣମାନେ ଆଗେ ନୋଟିସ୍‌ର ଉତ୍ତର ଦଅନ୍ତୁ, ଶ୍ରମିକମାନେ ତା'ର ଜବାବ

କରିବେ । ତା'ପରେ ଯାହା ହେବାର କଥା ହେବ ।
ଆସନ୍ତୁ ଶେଠ୍‌ଜୀ, ଯିବା ।

ରଙ୍ଗଲାଲ—ମୁଁ ଯିବି, ଆପଣଙ୍କ ସାଥିରେ ? ( ରହସ୍ୟକର )
ତା ହେଲେ ଠେଙ୍ଗାଟା ମୋତେ ଦିଅନ୍ତୁ ।

ଗୋପାଳ—(ହସି) ନିଅନ୍ତୁ, କିନ୍ତୁ ହୁସିଆର । ଅବନୀ ବାବୁଙ୍କ କଥା
ଅନୁସାରେ ଆପଣଙ୍କ ନିଜ ଠେଙ୍ଗା ଯିପରି ନିଜ ମୁଣ୍ଡରେ
ନ ପଡ଼େ । ଆସନ୍ତୁ—

( ଦୁହିଁଙ୍କ ପ୍ରସ୍ଥାନ ପରେ ଆସିବ ଯଜ୍ଞଦତ୍ତ । ଯଜ୍ଞଦତ୍ତକୁ
ଦେଖି ଅବନୀଙ୍କ ବିସ୍ମୟର ସୀମା ରହିଲା ନାହିଁ । ଯଜ୍ଞଦତ୍ତ ହସ
ହସ ମୁହଁରେ ଅଭ୍ୟର୍ଥନା ଜଣାଇଲା )

ଅବନୀ—ଆରେ ତମେ, ତମେ କେତେବେଳୁ ?

ଯଜ୍ଞ—ଅନେକ ବେଳୁ ।

ଅବନୀ—ଥିଲ କେଉଁଠି ?

ଯଜ୍ଞ—ଆପଣଙ୍କୁ ଅପେକ୍ଷା କରିଥିଲି ।

ଅବନୀ—କେଉଁଠି ?

ଯଜ୍ଞ—ଆପଣଙ୍କ ଶୋଇଲା ଘରେ । ବିଶ୍ୱାସ କରନ୍ତୁ ଆପଣମାନଙ୍କ
କଥାବାର୍ତ୍ତାର ଗୋଟିଏ ବର୍ଣ୍ଣବି ଶୁଣିନି ।

ଅବନୀ—ନା, ନା, ମୁଁ ତା' କହୁନି ବସ । କେମିତି ଆସିଲ ତ କହୁନ ।

ଯଜ୍ଞ—ସିନେମା ଯାଇଥିଲ ତ ?

ଅବନୀ—ହଁ, ସେକେଣ୍ଡ ସୋ । ଫେରୁ ଫେରୁ ପ୍ରାୟ ବାରଟା ।

ଯଜ୍ଞ—ବର୍ତ୍ତମାନ ମୋଟେ ଦଶଟା ବାଜିଛି । କିନ୍ତୁ ମୁଁ ତା' ପାଖରୁ
ଆସିନି । ଆସିଛି ଆପଣଙ୍କ ପାଖକୁ । ଜାଣିବ,
ଜାଣନ୍ତି ?

ଅବନୀ—ନ କହିଲେ ଜାଣିବି କପରି ?

ପ୍ରଭା—ମୋର ଅସିବାର ଗୋଟେ କାରଣ ଛଡ଼ା ଅନ୍ୟ କାରଣ କିଛି ନ ଥାଏ ଯା' ବୋଧେ ଆପଣ ଜାଣନ୍ତି ।

ଅବନୀ—ଅରକ୍ଷ ନିବାସ ପାଇଁ ଚାନ୍ଦା ?

ପ୍ରଭା—ଏଇ ମୋର ଶେଷ ଚେଷ୍ଟା । ଦୁଷ୍ମନ୍ତ ବାବୁଙ୍କ ନିକଟରେ ମୁଁ ଯାଚ୍ଞା କରିଛି, ପାଞ୍ଚଲକ୍ଷ ଟଙ୍କା ଚାନ୍ଦା ଉଠାଇ ମୁଁ ସେମାନଙ୍କୁ ଦେବି ।

ଅବନୀ—ଦୁଷ୍ମନ୍ତ ବାବୁ କିମ୍ବା ତୁଷାର ବାବୁ କେହି ଆଜି ନାହାନ୍ତି ଯେ ?

ପ୍ରଭା—ଆଜି କିଛି ଖବର ନାହିଁ ।

ଅବନୀ—ଓ........ ।

ପ୍ରଭା—ମୋର ଆପଣଙ୍କ ପାଖେ ନିବେଦନ ।

ଅବନୀ—ନିବେଦନ.........!

ପ୍ରଭା—ଆପଣ, ଆପଣ ମୋତେ ଲକ୍ଷେ ଟଙ୍କା ଦିଅନ୍ତୁ ।

ଅବନୀ—କ'ଣ ?

ପ୍ରଭା—ମୁଁ ଜାଣେ, ଆପଣଙ୍କର ବହୁ ଲକ୍ଷ ଟଙ୍କା ଅଛି । କିନ୍ତୁ ମୁଁ ଚାହୁଁଛି, ମୋଟେ ଲକ୍ଷେ......।

ଅବନୀ—ଲକ୍ଷେ ! !

ପ୍ରଭା—ହଁ, ମୋଟେ ଲକ୍ଷେ ଟଙ୍କା ।

ଅବନୀ—ଲକ୍ଷେ ଟଙ୍କା ! !

( ହୋ ହୋ ହୋଇ ହସି ଉଠିଲେ )

ପ୍ରଭା—(ପୂର୍ବପରି ଅବିଚଳିତ ଓ ଦୃଢ଼ ଦୃଢ଼ ମୂର୍ତ୍ତିରେ ) କଣ, ମନ-ଖୋଲି ହସି ପାରିଲେ ?

ଅବନୀ—ତୋ' ହସର ମୂଲ୍ୟ ତା'ହେଲେ କିଛି ରହିଲା ନାହିଁ ।

ତେବେ ଶୁଣ । ମୋ ନାଁରେ ବ୍ୟାଙ୍କରେ ଲକ୍ଷ ଲକ୍ଷ ଟଙ୍କା ରହୁଛି ସତ । କିନ୍ତୁ ମୁଁ ତା'ର ମାଲିକ ନୁହେଁ ।

ପ୍ରଭା—ମାନେ ?

ଅବନୀ—ମୁଁ ସ୍ୱଦେଶ ଦେଶକୁ ଇଣ୍ଡଷ୍ଟ୍ରିଅଲାଇଜ କରିବି । ଅନେକ ନୂଆ ନୂଆ କଳ କାରଖାନା ପାଇଁ, ଆମର ଯୋଜନା ରହିଛି । ସେଥିପାଇଁ କୋଟି କୋଟି ଟଙ୍କା ଦରକାର । ଗୁଣ୍ଡୁଚି ମୂଷା ପରି ଯେତେ ପାରେ ମୁଁ ସଞ୍ଚୟ କରିବି । ସେଥିରୁ ଗୋଟେ ପଇସା ଖରଚ କରିବାର ଅଧିକାର ମୋର ନାହିଁ । କାରଣ ସେ ଧନ ମୋର ନୁହେଁ । ସେ ଧନ ଦେଶବାସୀଙ୍କର ।

ପ୍ରଭା—କ'ଣ ? ଦେଶବାସୀଙ୍କର ?

ଅବନୀ—ହଁ, ଦେଶବାସୀଙ୍କର Sacred Trust ମୁଁ ତା'ର ଜଗୁଆଳି ମାତ୍ର ।

ପ୍ରଭା—ଆପଣଙ୍କର ଏ କଥା ଶୁଣି ମୁଁ ହୋ ହୋ ହୋଇ ହସି ପାରନ୍ତି ସତ । କିନ୍ତୁ ହସିଥିଲେ ମୋର ହସ ମୂଲ୍ୟହୀନ ହୋଇ ନ ଥାନ୍ତା । ଆପଣଙ୍କର ଯୋଜନାର ତାଲିକା ଆପଣଙ୍କର ଲମ୍ବା ସିନ୍ଧୁକରେ ଥାଉ, ସେଥିରୁ ମୋତେ ମିଳିବ କ'ଣ ? ମୋ ନିବେଦନ ରଖୁଛନ୍ତି କି ନାହିଁ, କୁହନ୍ତୁ ?

ଅବନୀ—ତମେ କର୍ମୀ, ତମକୁ ମୁଁ ସମ୍ମାନ କରେ । ସେଥିପାଇଁ ତମର ଖାତିରରେ ମୁଁ ହଜାରେ ଟଙ୍କା ଦେବାକୁ ରାଜି ଅଛି ।

ପ୍ରଭା—ମୋତେ ଆଉ ଲଜ୍ୟା ଦିଅନ୍ତୁ ନାହିଁ । ଆପଣ ଅନେକ ଟଙ୍କା ଆମକୁ ଦେଇଛନ୍ତି । କିନ୍ତୁ ବିଶ୍ୱାସ କରନ୍ତୁ, ଆମର

ନୂଆ ବ୍ରିଟେଣକଲଯ୍ଡ ପାଇଁ ଅନ୍ତତଃ ପାଞ୍ଚ ଲକ୍ଷ ଟଙ୍କା ଦରକାର ।

ଅବନୀ—କଏ କହୁଛି, ମୁଁ ଅନେକ ଟଙ୍କା ଦେଉଛି ? ମୋର ଅତି ଆପଣାର ବନ୍ଧୁମାନେ ଜାଣନ୍ତି ମୁଁ ପଇସାଟିଏ ବି ଦେଇନି । ମୁଁ ଏ ସବୁ ବିଶ୍ୱାସ କରେନା । ମୁଁ ତ କହୁଚି······ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରି ଅରକ୍ଷଣାବାସରେ ଯେଉଁମାନଙ୍କୁ ରଖିବ ସେମାନେ ପୁଣି ପଦାକୁ ବାହାରି ପଡ଼ିଲେ ଦେଶର କିଛି କ୍ଷତି ହୁଅନ୍ତା ନାହିଁ ।

ପ୍ରଭା—ହୁଅନ୍ତା ନାହିଁ । ସେମାନେ ବି'ଣ ଦେଶର ଲୋକ ନୁହଁନ୍ତି । ସୋଉ ମାନ୍ଧ ପରି ସେମାନଙ୍କୁ ନର୍ଦ୍ଦମାରେ ଛାଡ଼ିଦେଇ, ଆପଣ ଦେଶକୁ ଆଗେଇ ନେଇ ଯିବାକୁ ଚାହାନ୍ତି ।

ଅବନୀ—କିନ୍ତୁ ଦୁଷ୍ମନ୍ତପରି କେତେ ଜଣ ସ୍ୱପ୍ନବାଦୀ ଲୋକ ବାପ ଅଜାଙ୍କ ଧନ ଦାନ ଦେଇ ସେମାନଙ୍କୁ ବଞ୍ଚେଇ ପାରିବେ ନାହିଁ ।

ପ୍ରଭା—ଦୁଷ୍ମନ୍ତ ବାବୁ ସ୍ୱପ୍ନବାଦୀ ହୋଇପାରନ୍ତି ବା ଶୂନ୍ୟବାଦୀ ହୋଇ ପାରନ୍ତି । କିନ୍ତୁ ଦୁଷ୍ମନ୍ତ ବାବୁ ଆପଣଙ୍କ ପରି ଧନର ପାହାଡ଼ ବଢ଼େଇ ତା' ଭିତରେ ଛଟପଟ ହେବାକୁ ଚାହାନ୍ତି ନାହିଁ ।

ଅବନୀ—ଯୁକ୍ତି ଦେଇ କାହାର ମନର ଧାରଣା କେହି ବଦଳାଇ ପାରିବ ନାହିଁ । ଅତଏବ ମୋ କଥାକୁ ମୁଁ ଫେରାଇ ନେଉଚି ।

ପ୍ରଭା—ମୁଁ ମଧ୍ୟ ମୋ କଥା ଫେରାଇ ନେଉଚି । (ହୁହେଁ ହସିଲେ) ତା' ହେଲେ, ହୋଇଚି ଯାଇଁ ଆମେ ପହିଁଛିଲେ !

ଅବନୀ—( ବିଚଳିତ ହୋଇଉଠିଲେ । ପ୍ରଭାକୁ ମୁଗ୍ଧ ଦୃଷ୍ଟିରେ ଚାହିଁ )
ଅଳକାପୁରୀ-ସ୍ୱର୍ଗ-ଅମରାବତୀ !······

ପ୍ରଭା—( ଓଠାଗରେ ଚାହିଁ ) —ସିଏତ ବହୁତ ଦୂରରେ ଅଛି ।
ଆମେ ପୁଣି ସେଇଟିକି ଫେରିଆସିବ ······ଯୋଉଟି
ଅଛନ୍ତି ଧନକୁବେର ଅବନୀବାବୁ ଆଉ ଅଛି ମୁଁ—ଲୁଟିଣ
ନିସ୍ୱପ୍ନମାନଙ୍କର ପ୍ରତିନିଧି······ ।

( ଅବନୀ ସମ୍ମୁଖରେ ଆଣ୍ଠୁମାଡ଼ି ବସି ହାତ ପତେଇ )
ମୋର ନିବେଦନ—ଦିଅନ୍ତୁ ଭିକ୍ଷା—ଅଞ୍ଜୁଳା ପୂର୍ଣ୍ଣକରି
ଦିଅନ୍ତୁ······

ଅବନୀ—( କ୍ଷଣପ୍ରଭାର ହାତଧରି ଉଠେଇ ନେଇ ) ତମେ ତ ଜାଣ
ପ୍ରଭା···ମୁଁ ବ୍ୟବସାୟୀ ଲୋକ—ମୁଁ ଭିକ୍ଷା ଦେବାକୁ
ପସନ୍ଦ କରେନି ।

ପ୍ରଭା—(ଛଳ ଛଳ ଆଖିରେ ) ହଁ, ଆପଣ ବ୍ୟବସାୟୀ ! ଆପଣଙ୍କର
ପ୍ରଚୁର ଧନ ବହୁତ—କିନ୍ତୁ······

ଅବନୀ—( ପ୍ରଭାର ହାତମୁଠାକୁ ଆବେଗରେ ଧରି ) ତମର ମଧ୍ୟ ପ୍ରଚୁର
ରୂପ ଅଛି ପ୍ରଭା । ···

ପ୍ରଭା—( ହାତ ଟାଣି ଆଣି ) ହଁ ଏତ ଅଛି । ମୋର ଅଛି ରୂପ,
ଯଉବନ ଆଉ ଆପଣଙ୍କର ଅଛି ଧନ, ଦଉଲତ ।
ବ୍ୟବସାୟର ବୁଦ୍ଧି ନେଇ ଆପଣ ହିସାବ କରି
ଦେଖନ୍ତୁ—କାହାର ମୂଲ୍ୟ କେତେ X······( ବାହାରେ
ମଟର ହର୍ଣ୍ଣ ଶୁଭିଲା—ସଙ୍ଗେ ସଙ୍ଗେ ଭିତରେ ହେମାଙ୍ଗିନୀର ସ୍ୱର
ଶୁଣାଗଲା । ଅବନୀ ଅନ୍ୟ ଘରକୁ ଚାଲିଗଲେ । ହେମ ଆସିଲା )

ହେମ—ପ୍ରଭା, ତୁ ଏଠି ?

ପ୍ରଭା—ତୁ ସିନେମା ଯାଇନୁଁ ?

ଅବନୀ—( ବିଚଳିତ ହୋଇଉଠିଲେ । ପ୍ରଭାକୁ ମୁଗ୍ଧ ଦୃଷ୍ଟିରେ ଚାହିଁ )
ଅଲକାପୁରୀ-ସ୍ୱର୍ଗ-ଅମରାବତୀ !······

ପ୍ରଭା—( ·ଆକାଶରେ ଚାହିଁ ) —ସିଏତ ବହୁତ ଦୂରରେ ଅଛି ।
ଆମେ ପୁଣି ସେଇଠିକି ଫେରିଆସିବା······ଯୋଉଟି
ଅଛନ୍ତି ଧନକୁବେର ଅବନୀବାବୁ ଆଉ ଅଛି ମୁଁ—ରୁଗ୍ଣ
ନାରୀହୃଦୟମାନଙ୍କର ପ୍ରତିନିଧି······ ।

( ଅବନୀ ସମ୍ମୁଖରେ ଆଣ୍ଠୁମାଡ଼ି ବସି ହାତ ପତେଇ )
ମୋର ନିବେଦନ—ଦିଅନ୍ତୁ ଭିକ୍ଷା—ଅଞ୍ଜୁଳି ପୂର୍ଣ୍ଣକରି
ଦିଅନ୍ତୁ······

ଅବନୀ—( କ୍ଷଣପ୍ରଭାର ହାତଧରି ଉଠେଇ ନେଇ ) ତମେ ତ ଜାଣ
ପ୍ରଭା···ମୁଁ ବ୍ୟବସାୟୀ ଲୋକ—ମୁଁ ଭିକ୍ଷା ଦେବାକୁ
ପସନ୍ଦ କରେନି ।

ପ୍ରଭା—(ଛଳ ଛଳ ଆଖିରେ ) ହଁ, ଆପଣ ବ୍ୟବସାୟୀ ! ଆପଣଙ୍କର
ପ୍ରଚୁର ଧନ ରହିଛି—କିନ୍ତୁ······

ଅବନୀ—( ପ୍ରଭାର ହାତମୁଠାକୁ ଆବେଗରେ ଧରି ) ତମର ମଧ୍ୟ ପ୍ରଚୁର
ରୂପ ଅଛି ପ୍ରଭା ! ···

ପ୍ରଭା—( ହାତ ଟାଣି ଆଣି ) ହଁ ଏତ ଅଛି । ମୋର ଅଛି ରୂପ,
ଯଉବନ ଆଉ ଆପଣଙ୍କର ଅଛି ଧନ, ଦଉଲତ ।
ବ୍ୟବସାୟର ବୁଦ୍ଧି ନେଇ ଆପଣ ହିସାବ କରି
ଦେଖନ୍ତୁ—କାହାର ମୂଲ୍ୟ କେତେ×······( ବାହାରେ
ମଟର ହର୍ଣ୍ଣ ଶୁଭିଲା—ସଙ୍ଗେ ସଙ୍ଗେ ଭିତରେ ହେମାଙ୍ଗିନୀର ସ୍ୱର
ଶୁଣାଗଲା । ଅବନୀ ଅନ୍ୟ ଘରକୁ ଚାଲିଗଲେ । ହେମ ଆସିଲା )

ହେମ—ପ୍ରଭା, ତୁ ଏଠି ?

ପ୍ରଭା—ତୁ ସିନେମା ଯାଇନୁ ?

ହେମ—ନା, ତୋତେ ସାଥିରେ ନେଇ ଯିବ ବୋଲି ଉପର ସେଟି ଅପେକ୍ଷା କରି ବସିଛି । ତୁ ଏଠିକି ଆସିଚୁ ବୋଲି ମୁଁ ଜାଣିବ କିପରି ?

ପ୍ରଭା—ତାହାଙ୍କୁ ଜଣେଇ ମୁଁ ତୋପାଖକୁ ଯାଏନା ।

ହେମ—ହଉ ଆ, ଭିତରକୁ ଆ ।

ପ୍ରଭା—ମୋର କାମଟା ଏଇଠି ତୁଟେଇ ଦେ' ।

ହେମ—କାମ ?

ପ୍ରଭା—ମୋର ଆଉ ଦ୍ୱିତୀୟ କାମ କଣ ଥାଇପାରେ, ମୋର ନିଜ ଧନର ପେଶା-ଗୁହା ।

ହେମ—ଏତେ ନିନ୍ଦା, ଅପବାଦ ସହି ବି ଗୃହ ଦଣ୍ଡାରେ ତୁ ଏକା ଏକା ବାର ଦୁଆର ବୁଲୁଚୁ ?

ପ୍ରଭା—ନ ବୁଲି କିପରି ରହିବି, ସମସ୍ତେ ଯେ ମୋର ମୁଣ୍ଡକୁ ଅନେଇ ବସିଚନ୍ତି । ଧନ ସଂଗ୍ରହକର ନେଲି ଦେଇଦେଲେ ଲୁଚ୍‌ଶାଳୟ ଖୋଲା ହେବ । ସ୍ୱାଁ' ପରେ କିନ୍ତୁ ତୁ ଦେଖିବୁ ହେମ, ପ୍ରଭା ଆଉ ଏଥିରେ ନାହିଁ । ଦୁହେଁ ବାବୁଙ୍କ ପ୍ରେମିକା ବୋଲି ମତେ ଆଉ ନିନ୍ଦିବାର ବାଟ ତୋର ନ ଥିବ ।

ହେମ—ହୁଁ, ଖୁବ୍ କଥାତ କହି ଶିଖିଲିଣି ! ସିଏ ତାହାଙ୍କ ?

ପ୍ରଭା—କିଏ ?

ହେମ—ମୋ ଘରେ ଠିଆ ହୋଇ ତାହା କଥା ମୁଁ ପଚାରୁଛି ତୁ ବୁଝି ପାରୁନୁ ?

ପ୍ରଭା—ତାହା କଥା ପଚାରୁଚୁ, ବୁଝୁଚି । କିନ୍ତୁ ତୋ' ଘରେ ଠିଆ-ହୋଇ ଏ ପ୍ରଶ୍ନ ତୁ ମୋତେ କିପରି ପଚାରୁଚୁ, ଏ କଥା ବୁଝିପାରୁନ ।

ହେମ—ହୁଁ ! ତାଙ୍କୁ ଗୁହା ମାଗିଥିଲୁ ?

ପ୍ରଭା—ତୁ କ'ଣ ଭାବୁଚୁ ?

ହେମ—କ'ଣ କହିଲେ ? ଦେଲେ ନା ନାହିଁ ?

ପ୍ରଭା—ତାଙ୍କର ଦଆ ହାତ କି ଅଦଆ ହାତ ତୁ ଜାଣିନୁ ?

ହେମ—ଜାଣେ, ଦେଇନଥିବେ ।

ପ୍ରଭା—ତୁ ଦେ' । ମୁଁ ତୋତେ ଭିକ୍ଷା ମାଗୁଚି ।

ହେମ—ଭିକ୍ଷା ! ଲାଜ ମାଡୁନାହିଁ ।

ପ୍ରଭା—ଯେଉଁ ଧନ ତୋର ଏଇ ଘରୁ ମୋର ଅନ୍ଧ ସ୍ୱାମୀ ଝିଙ୍କ ଅନ-ହିଏ ନ ପାଇ ଫେରିଯାଇ ଥିଲେ । ସେଧନ ଭିକ୍ଷାମାଗି ଆସୁଥିଲେ ଲାଜ ମାଡ଼ଥାନ୍ତା । ଆଜ ନୁହେଁ, ଆଜ ମୁଁ ନିଜପାଇଁ ଆସିନି ।

ହେମ—ତୁ କ'ଣ ପାଗଳ ହୋଇ ଗଲୁଣି ପ୍ରଭା ?

ପ୍ରଭା—ଅନେକ ଦିନୁଁ ! ପାଗଳ ନ ହେଲେ ଲୋକେ ପରପାଇଁ ନିଜକୁ ବଳି ଦେଇ ପାରିବେ ନାହିଁ । ତୋ ଦୁଷ୍ମନ୍ତ ଭାଇ ପାଗଳ, ତୁଷାର ବାବୁ ପାଗଳ । ସେମାନଙ୍କୁ ପାଞ୍ଚ-ଲକ୍ଷ ଟଙ୍କା ଦେବବୋଲି ମୁଁ ଜାବାବ ଦେଇଚି । ତୋ ପାଖରେ ଭିକ୍ଷା, ତୁ ମୋତେ ଦେ' ।

ହେମ—ପାଞ୍ଚଲକ୍ଷ...... ।

ପ୍ରଭା—ହଁ ।

ହେମ—ଏତେ ଟଙ୍କା ମୁଁ ପାଇବ କେଉଁଠୁ ?

ପ୍ରଭା—ତୁ କୋଟିପତିର ସ୍ତ୍ରୀ ।

ହେମ—ମୁଁ ନିଜେ କୋଟିପତି ନୁହେଁ ।

ପ୍ରଭା—ତାଙ୍କୁ ମାଗି ପାରିବୁନି ?

ହେମ—ମାଗିଲେ ସେ ମୋତେ ଦେବେ ନାହିଁକି ।

ପ୍ରଭା—କେତେ ?

ହେମ—ତୁ ମୋର ପିଲାଦିନର ସାଙ୍ଗ । ସେଥିପାଇଁ······ଦୁଇ ହଜାର ଟଙ୍କା ମୁଁ ଦେବ ।

ପ୍ରଭା—ମୋଟେ ଦୁଇ ହଜାର······ !

ହେମ—ଦୁଇ ହଜାର ଟଙ୍କା ଅଧିକ ନୁହେଁ ?

ପ୍ରଭା—ଖବରକାଗଜ ପତ୍ର ପତ୍ରିକା ପଢ଼ିନୁ । ଷଣ୍ଢପ୍ରଭାର ଖାଲି ହସ ଚିତ୍ରର ମୂଲ୍ୟ ଦୁଇ ହଜାର । ଆଉ ତ ଅଙ୍ଗ-ସ୍ପର୍ଶ, ଆଲିଙ୍ଗନ······ ।

ହେମ—ନିର୍ଲଜ୍ଜ ।

ପ୍ରଭା—ନିର୍ଲଜ୍ଜ ନ ହେଲେ ପାଞ୍ଚଲକ୍ଷ ଟଙ୍କା ଜୁଟେଇବ କିପରି ? ପତ୍ର ପତ୍ରିକା ଲେଖିବେ କିପରି ? ତୁ ଶୁଣିପାରିବୁ କିପରି ? ହଉ ଯାଉଛି ।

ହେମ—ଏକା ଯିବୁ, ଏତେ ରାତିରେ ?

ପ୍ରଭା—ଅବନୀ ବାବୁ ଛାଡ଼ିଦେଇ ଆସିବେ ନାହିଁ ?

ହେମ—ସେ ତୋ ପରି ପାଗଳ ନୁହଁନ୍ତି, ଅନ୍ଧ ନୁହଁନ୍ତି······ ?

ପ୍ରଭା—ସବୁ ପୁରୁଷ ପାଗଳ ହେମ, ସବୁ ସ୍ୱାମୀ ଅନ୍ଧ । ତାହାଙ୍କ ପୁଣି, ଦୁନିଆଁ ଅଧିକେ ମୁଁ ତାଙ୍କର ଶଳାଭାଉଜ । ( ହସି ) ଅନ୍ଧ ନ ହୋଇ ସେ ରହି ପାରିବେ ? ହଉ ମୁଁ ଯାଉଛି, ମନେ ରଖିଥିବୁ ।

(ପ୍ରଭା ଗଲା, ହେମ ମଧ୍ୟ ସନ୍ଦେହର ବୋଝ ଘେନି ଭିତରକୁ ଗଲା । ଅଳ୍ପକ୍ଷଣ ପରେ ବାହାରୁ ଘରକୁ ଆସିଲେ ଅବନୀ । କିଛିକ୍ଷଣ ସେ ଅସ୍ଥିର ହୋଇ ପଦଚାରଣ କଲେ, ତା'ପରେ ହଠାତ୍ ଖଣ୍ଡେ କାଗଜ ଟାଣିଆଣି ତଳେ ଖଣ୍ଡେ ଲେଖିଗଲ)

ଅବନୀ—"ପ୍ରଭା, ତମେ ଠିକ୍ କହୁଛ । ମୁଁ ବ୍ୟବସାୟୀ । ହାତରେ ତସ୍ୱୀକୁ ଧରି ଓଜନ କରି ଦେଖିଲି—ତମର ମୂଲ୍ୟ ବେଶି । ଲକ୍ଷେ ଟଙ୍କା ଦେଇ ମୁଁ ବଣିଜ କରିବାକୁ ଚାହେଁ । ତମେ ଆସିବ । ତମର ପଣ୍ୟ-ସମ୍ଭାର ମୋ ହାତରେ ଟେକି ଦେଇ ଟଙ୍କା ନେଇଯିବ ।"

( ମଞ୍ଚ ଅଂଧକାର । ଏକ ଆତଙ୍କ ଓ ଦ୍ୱନ୍ଦ୍ୱମୂଳକ ବାଦ୍ୟ ବାଜି ଉଠିଲା-- । ବାଦ୍ୟର ଅବସାନ ପରେ ଆଲୋକ ପୁଣି ଜଳି ଉଠିଲା--ଦେଖାଗଲା ହାତରେ ଗୋଛାଏ ନୋଟ ଧରି ଠିଆହୋଇଛି କ୍ଷଣପ୍ରଭା--ଆଖିରୁ ଲୁହ ଝରିପଡ଼ୁଛି । ପାଖରେ ହେମ--ଉତ୍ତେଜନାରେ ଜଳି ଯାଉଛି )

ହେମ—କାହିଁକି—କାହିଁକି ସେ ତୋତେ ପଚିଶ ହଜାର ଟଙ୍କା ଦେଇଚନ୍ତି, କାହିଁକି ?

ପ୍ରଭା—କହିଲେ ବିଶ୍ୱାସ କରିବୁ ।

ହେମ—ପ୍ରଭା ! ! !

ପ୍ରଭା—ଭୁଲ୍କାଟାରେ ଏତେଗୁଡ଼ାଏ ଟଙ୍କା ସେ ମୋତେ ଦେଇ ନାହାନ୍ତି । ତୋ ପାଖରେ ପ୍ରଭାର ମୂଲ୍ୟ ଥାଇ ନ ପାରେ, କିନ୍ତୁ ଅବନୀ ବାବୁଙ୍କ ପରି ପୁରୁଷମାନଙ୍କ ପାଖରେ ଏ ଦେହଟାର ମୂଲ୍ୟ ବହୁତ ବେଶି ।

ହେମ—ଶେଷକୁ ତୁ ମୋର ସର୍ବନାଶ କଲୁ ପ୍ରଭା !

ପ୍ରଭା—ସର୍ବନାଶ ମୁଁ କାହାରି କରିନି ହେମ ! ମୋ ନିଜ ପାଇଁ ଯେତେବେଳେ ଟଙ୍କା ନଥିଲା—ମୁଁ କାହାର ସର୍ବନାଶ କରିବି କାହିଁକି ? ଅବନୀବାବୁ ଏ ଦେହଟାକୁ ଛୁଇଁଚନ୍ତି ମାତ୍ର--ତା'ର ଦାମ୍ ପଚିଶ ହଜାର ଟଂକା । ସତ୍ତି ଥିଲା

ଗୋଟେ ରାତ ତାଙ୍କ ଯୋ୍ୟା-ସଙ୍ଗିନୀ ହେଲେ ଆଉ ପଚିଶ ହଜାର ଟଙ୍କା ଦେବେ । ମୁଁ କିନ୍ତୁ ସେ ସର୍ତ୍ତ ରଖିନି—

ହେମ—ପ୍ରଭା, ତୁ ମଣିଷ ନୋହୁଁ ପ୍ରଭା, ତୁ ରାକ୍ଷସୀ---ତୁ ପିଶାଚୀ...... ।

ପ୍ରଭା—ମୋ ପାଇଁ ତୋ' କୋଟିପତି ସ୍ୱାମୀଙ୍କଠୁ ଧନ ଅସୁଲ କରିବାର ମଣିଷପଣିଆ ତୋର ନ ଥିଲା । ଆଜ ଏତକରେ ଯଦି ତୋର ଚେତନା ନ ହେଉଛି, ତେବେ ମୋ ସ୍ଥାନକୁ ଆସି ଅବନୀବାବୁଙ୍କ ସହିତରେ ରାତ ହେଇ ଦେଖ ତାଙ୍କଠୁ ଆଉ ପଚିଶ ହଜାର ତୁ ଅସୁଲ କରି ପାରୁଚୁ କି ନା ?

ହେମ—ପ୍ରଭା ! !

ପ୍ରଭା—ମୁଁ ଜାଣେ ତୁ ପାରିବୁନି—

ହେମ—ଆଉ କଏ ଯେ ପାରିବ, ତା'ବି ମୁଁ ଜାଣେନି । କିନ୍ତୁ ତୁ କାହିଁକି ଦୁନିଆଁକୁ ଇମିତି ଜାଳି ପୋଡ଼ି ଦବାକୁ ବାହାରିଚୁ ?

ପ୍ରଭା—ତୁ ପୁଣି ଭୁଲ କହୁଚୁ ହେମ । ଦୁନିଆଁଟାକୁ ନୁହେଁ—ମୋ ନିଜକୁ । ଏଇଥିପାଇଁ ମୋର ଜନ୍ମ—ଏଇଥି ପାଇଁ ମୋର ସଂସାର---ମୋର ସ୍ୱାମୀଙ୍କର ଆଦର୍ଶ ପାଇଁ "ମୋ ନିଜକୁ ମୁଁ ଆଜ ଜାଳିଦେବାକୁ ଚାହେଁ ।"

—ପରଦା—

## ତୃତୀୟ ଦୃଶ୍ୟ

( ଅରଣ୍ୟବାସର ଜ୍ଞେଷ୍ଠା ବୁଢ଼ା ଗୀତଟିଏ ଗାଉଛି )

—ଗୀତ—

ଜଳ ଯା'—ଜଳ ଯା'—ଜଳ ଯା'
ଆଲୋକେ ଜୀବନ ଧୋଇ ଯା
ଅନ୍ଧକାରେ ଜଳ ଯା' —୦—

ଜୀବନଟା ସାରା ସହିଲୁ ତୁ ଜଳ
ପର ଲାଗି ନିଜ ସୁଖ ଦେଲୁ ବଳି
ନିଜେ ମରି ଶତ ଜନମେ ହସାଇ
ମରଣ ଭୁଲାଇ ଯା' —୧—

ଯା'କଥା ମାନି ତୁ ଦୁନିଆଁ ଦୁଆରେ
ଭିକାରୁଣୀ ବେଶେ ବୁଲିଲୁ ପଥରେ
ବୁଝିବ ତୋ ଲାଜ ବୁଝିବ ସେ ଦିନେ
ଯା'ଭୁ ଆଗେଇ ଯା' —୨—

ଜେତେ ଯେ ପତଙ୍ଗ ତୋ ରୂପ ଅନଳ
ପରଶେ ମରନ୍ତୁ ସବୁ ଛଳ ଛଳ
ସେ ରୂପ ଅନଳେ ଦୁନିଆଁ ଜାଳି ତୁ
ଝଙ୍କା ବୁହାଇ ଯା' —୩—

—ପରଦା—

## ଚତୁର୍ଥ ଦୃଶ୍ୟ

( ତୁଷାରକାନ୍ତର ଶୟନ କକ୍ଷ—ସମୟ ରାତ୍ରି—ଉପସ୍ଥିତ କ୍ଷଣପ୍ରଭା, ହେମାଙ୍ଗିନୀ । କ୍ଷଣପ୍ରଭାର ପଲଙ୍କ ରଶୁନଂ ଦେହକୁ ଢାଳି ରଖିଛି—ଖଣ୍ଡିଏ ସାଧା ଶାଢ଼ୀ )

ପ୍ରଭା—ଆଜି କଣ କଲେ—କଣ କହିଲେ ବିଶ୍ୱାସ କରିବୁ ? ଖବରକାଗଜରୁ ତୁ ଦେଖିଥିବୁ । ବାହାରର ସବୁ କାମରୁ ମୁଁ ସମ୍ପର୍କ ତୁଟେଇ ଦେଇଛି । ଏମିତିକି ଅବଷନବାସ ସହିତ ମୋର ଆଜି କିଛି ସମ୍ପର୍କ ନାହିଁ ।

ହେମ—ଭଣ୍ଡାର ଘରର ଗୃବ ଲେନ୍ଥାଟାତ ପଣତ ଅଗରେ ବନ୍ଧା ହେଇଛି !—

ପ୍ରଭା—ମୁଁ ଜାଣିଥିଲି,—ଏଇଟା ତୋ ଆଖିରୁ ବାଦ୍ ଯିବନି ।

ହେମ—ଦେହରୁ ଗହଣାଗଣ୍ଠି ଖୋଲିଦେଇ ସାଧା ଶାଢ଼ୀ ଖଣ୍ଡେ ପିନ୍ଧିଲେ ବୋଲି ଏତେ ବଡ଼ ଗୋଟାଏ କଥାକୁ ମୁଁ ଆଖି ବୁଜିଦେବି କିମିତି ? କ୍ଷଣପ୍ରଭା ଆଜିବି ଏ ଘରର ଘରଣୀ, ଏ କଥା କିଏ ନ ଜାଣେ ?

ପ୍ରଭା—ସେତିକି ବନ୍ଧନ ଅଛି । ଯାହାଙ୍କ ପାଇଁ ଏ ବନ୍ଧନ ସେ ଆଜି ମରି ସ୍ୱର୍ଗରେ । ମୁକ୍ତି ଦେବ କିଏ ? ପାରିବୁ ତୁ ? ଏଥିରୁ ତୁ ମୋତେ ମୁକ୍ତି ଦେଇ ପାରିବୁ ?

ହେମ—ମୁଁ କିଏ ? ତୋ ମୁକ୍ତି ତୋ ହାତରେ । "ନିଜେ ମାଳି ନିଜେ ପୂଜାରୀ"—କଥାଟାର ମାନେ କଣ ମୋତେ ବୁଝେଇବାକୁ ପଡ଼ିବ ।

ପ୍ରଭା—ତୋ କଥା ଶୁଣି ମୁଁ ହସିବି ନା କାନ୍ଦିବି, ନା ରାଗିବି, ନା ଚିଡ଼ିବି କିଛି ବୁଝି ପାରୁନି । ଯୋଉ ପୁରୁଷ ଲକ୍ଷ ଟଙ୍କା

ସେଇ ସୁନ୍ଦରୀ ସ୍ତ୍ରୀ ସହିତ ଘଣିକ ବସେ—ତାକୁ ମୁଁ କ୍ଷମା କରି ପାରେ ନା । ମୋ ମୁହଁକୁ ଚାହିଁ ହେମ—ଏଇ ମୁହଁରୁ ଆଜି ପଦଏ କଥା ବାହାରିଥିଲେ ଅବନୀ ବାବୁଙ୍କ ପାଇଁ କାନ୍ଦି କାନ୍ଦି ତୋ ଦିନ ସବୁ ନ ଥାନ୍ତା । କିନ୍ତୁ ମୁଁ ତୋତେ ବନ୍ଧାଇନି ଅଥଚ ତୁ.........? ଅଚ୍ଛା ମଣିଲୁ ହେମ, ତୋର ଏତେ ପରିବର୍ତ୍ତନ ହେଲା କିମିତି ? ଝିଅ ଅଧିନେତ ତୁ ଏତେ ଚୁଞ୍ଚି ମାନ୍ଥ ପରୀକ୍ଷା କରୁ ନଥିଲୁ ?

ହେମ—ଝିଅଧନେ ତୁ କଣ ଏଡ଼େ ସୁନ୍ଦର ବନେଇ ଚୁନେଇ କଥା କହିପାରୁଥିଲୁ ?

ପ୍ରଭା—ତୋ ପରି ଝିଅ ଯେ ଇମିତି ନିର୍ବୋଧ ହେବ ଏ କଥା ମୁଁ ଭାବି ପାରୁନି । ଦୁଷ୍ମନ୍ତ ବାବୁଙ୍କୁ କାଲିପୋଢ଼ ମାରିବାକୁ ନିଆଁ ଯଦି ମୁଁ ଜଳାଇ ଥାନ୍ତି, ତେବେ ସେ ଆଜଯାଏଁ ଥାନ୍ତେ କେଉଁଠି ? ତୋ ମନର ଭୁତ ତୋତେ ଖାଉଛି । ଆଖି ଆଗରେ ଅବନୀ ବାବୁଙ୍କୁ ଦେଖି, ଦୁଷ୍ମନ୍ତଙ୍କ ପାଇଁ ତୋ ଛାତି ଥରୁଛି ।

ହେମ—ମଣିଷ, ମଣିଷ ପାଖରେ ହାରେ ସତ, ହେଲେ ତୋ ପାଖରେ ମୁଁ ଯିମିତି ଭାବେ ହାରି ଯାଉଚି, ତୋତେ ଆଜି କିଛି କହିବାର ସାହସ ମୋର ରହୁନି—

ପ୍ରଭା—କିନ୍ତୁ ମଣିଷ ପାଖରେ ମଣିଷର ଧୈର୍ଯ୍ୟର ଗୋଟେ ସୀମା ଥାଏ ହେମ ! ହେଲେ ତୋ ପାଇଁ ସେ ସୀମା ମୋତେ ଟପି ଯିବାକୁ ପଡ଼ୁଛି । କହ କଣ ତୁ କହୁଚୁ ?

ହେମ—ଏ ଘରୁ ତୁ ମୁକ୍ତି ଚାହୁଁଛୁ ? ମୋର ଗୋଟିଏ ଛୋଟିଆ ପ୍ରଶ୍ନର ଉତ୍ତର ଦବୁ ।

ପ୍ରଭା—କଣ ?

ହେମ—ତୁ ଭାଇଙ୍କ ମଙ୍ଗଳ ଚାହୁଁ ?

ପ୍ରଭା—ଏ ପ୍ରଶ୍ନ ତୁ ପଚାରୁଛୁ କେ ହେମ...ପଚାରୁଛୁ କେ । ମୋର ସବୁ କଥା ତୋ ମନରେ ବିଷ ଭରିଦେଲେ ବି ଅନ୍ତତଃ ଏ କଥାଟାରେ ତୋ ମନ ସଫା ଥିବ ବୋଲି ମୋର ଧାରଣା ଥିଲା ।

ହେମ—ବେଶ୍, ତେବେ ଖାଲି କଥାରେ ନୁହେଁ—କାମରେ ତାର ପ୍ରମାଣ ତୋତେ ଦେବାକୁ ପଡ଼ିବ ।

ପ୍ରଭା—କଣ ?

ହେମ—ଭାଇଙ୍କର ବିବାହ । ଏବା ତୁ ଚାହିଁଲେ ସେ ବିବାହ କରିବେ । ତାଙ୍କୁ ରାଜି କରାଇ କନ୍ୟା ଠିକ୍ କରିବୁ ତୁ ।

ପ୍ରଭା—ହେମ—

ହେମ—ମୋ କଥାର ଜବାବ୍ ଦେ' ।

ପ୍ରଭା—ଜବାବ୍ ଦେଉଛି ହେମ—ମୁଁ ମୋର ସାଧ୍ୟମତେ ତାଙ୍କୁ ରାଜି କରାଇବାର ଚେଷ୍ଟା କରିବି । ଆଜି ପଛେ ତୁ ଏ କଥା ମୋତେ କହିଥିଲୁ—ମୁଁ ରାଜି ହୋଇ ନ ଥିଲି—ହେଲେ ମୁଁ ଆଜି ତୋ' କଥା ରଖୁଛି ।

ହେମ—ମୁଁ ଜାଣେ ପ୍ରଭା, ଭାଇ ତୋ କଥାରୁ କେବେ ବାହାର ଯିବେ ନାହିଁ । ତୁ ତାଙ୍କୁ ରାଜି କରେଇ ପାରିଲେ ଏ ବଂଶର ଗୋଟେ ବଡ଼ ଉପକାର କରିବୁ । ବାପା ବୋଉ ସ୍ୱର୍ଗରୁ ଥାଇ ଆଶୀର୍ବାଦ କରିବେ । ଆଜି ମୋତେ ବନ୍ଧୁ ବୋଲି କହୁ ତୋ ନିଜ ସ୍ୱାର୍ଥ ପାଇଁ ହଉ ବା ଅନ୍ୟର ସ୍ୱାର୍ଥ ପାଇଁ ହଉ—ମୋ ପ୍ରତି ଯେଉଁ ବିଶ୍ୱାସ-ଘାତକତା କରିଛୁ, ତାକୁ ମୁଁ ଚିରଦିନ ପାଇଁ ଭୁଲିଯିବି । ଖାଲି ଏଇ କଥା କହିବି ବୋଲି ଆଜି ମୁଁ ଆସିଥିଲି ଯାଉଛି—

ତୋଠୁ ଖବର ପାଇଲେ ମୁଁ ପୁଣି ଆସିବ । ( ଗୃହଗନ୍ତ )

ପ୍ରଭା—ତୋର ବିଶ୍ୱାସ ଫେରି ପାଇବା ପାଇଁ ନୁହେଁ ହେମ—
ମୋର ନିଜର ମୁକ୍ତି ପାଇଁ ମୁଁ ତୋ କଥାରେ ସ୍ୱୀକାର ହେଉଛି —

ତୁଷାର—( ଆସି )—ପ୍ରଭା ! କାହା ସାଥିରେ କଥା ହଉଥିଲ ?

ପ୍ରଭା—ହେମ ଆସିଥିଲା—

ତୁଷାର—ତାହାନ୍ତି ସେ ?

ପ୍ରଭା— ଗଲାଣି—

ତୁଷାର—ଏତେ ଶୀଘ୍ରରେ କୁଆଡେ଼ ଗଲେ—ତାଙ୍କ ଘରକୁ ?

ପ୍ରଭା—କହି ପାରିବିନି—ତୁମେ ଅସ—

( ହାତ ଧରି ତାକୁ ପଲଙ୍କଆଡ଼କୁ ଆଗେଇ ନଉଥିଲାବେଳେ ତୁଷାର ପଂକ୍ତିଗନ୍ତ )

ତୁଷାର—ଏ କ'ଣ ପ୍ରଭା, ତମ ହ'ହାତ ଖାଲି··· ?

ପ୍ରଭା—ଅଜି ସେ ସବୁର ଦରକାର ନାହିଁ, ମୋର ଏଠି ସବୁ କାମ ଶେଷ ହେଇଛି ।

ତୁଷାର—ପୁଣି ସେଇ ପାଗଳାମୀ ? କାମ ଶେଷହେଲା କୋଉଠି ? ତମରି ଚେଷ୍ଟାରେ ପାଞ୍ଚଲକ୍ଷ ଟଙ୍କା ଅସିପାରିଲା । ଏଥି-ପାଇଁ ଅମେ ସମସ୍ତେ ତମ ପାଖରେ ଋଣୀ । ସମସ୍ତଙ୍କ ଉତ୍ସାହ ପୁଣି ବଢ଼ି ଯାଇଛି । କାଲି ମିଟିଙ୍ଗ୍‌ରେ ଠିକ୍ ହୋଇଚି ଓଡ଼ିଶାର ପ୍ରତ୍ୟେକ ଜିଲ୍ଲାରେ ଅରକ୍ଷଣୀବାସର ଶାଖା ଖୋଲାଯିବ । ପ୍ରତି ଜିଲ୍ଲାପାଇଁ ଅନ୍ତତଃ ଲକ୍ଷେ କରି ଟଙ୍କା ଦରକାର ।

ପ୍ରଭା—ନା, ନା, ମୋତେ ଅଜ କିଛି କୁହନାହିଁ, ମୁଁ ଅଜ କିଛି

ଶୁଣିବାକୁ ଚାହେଁ ନା । ତୁମେ ଚାଲ, ଏ ଚିର ଦୁଃଖଆଲୁ ଅନେକ ବାହାର ଯିବା ।

ତୁଷାର—ପ୍ରଭା ।

ପ୍ରଭା—ମୋ କଥା ତୁମେ ଶୁଣ । ମୁଁ ଆଜ ଏ ଆଦର୍ଶ ପଛରେ ଗୋଟାଏ ବାଟ ପିଛୁଳା ପରି ଧାଇଁ ବୁଲି ପାରିବିନି । ମୁଁ ତମର ସ୍ତ୍ରୀ ହୋଇ ରହିବାକୁ ଚାହେଁ । ମୁଁ ଜନନୀ ହେବାକୁ ଚାହେଁ । ମୋର ସ୍ୱାମୀ, ମୋର ସଂସାର । ଏଠି ରହୁ ଏ ଦୁହିଁଙ୍କୁ ମୁଁ ଖୋଜି ପାଉନି, ଏ ଅଭାବର ଝଙ୍କାରୁ ମତେ ତୁମେ ବଞ୍ଚାଅ ।

ତୁଷାର—(ପ୍ରଭାକୁ ନିଜର ବାହୁବନ୍ଧନରେ ଆଣି) ଖୋଜି ପାଉନ ? କାହିଁକି ? ଏଇତ ! ତମ ପାଖରେ ମୁଁ, ତମର ସ୍ୱାମୀ । କାହାର ଆଲିଙ୍ଗନରେ ଏଠି ତୁମେ ଧରା ଦେଇଚ ?

ପ୍ରଭା—ଇମିତି ଧରାଦେଲେ ନାରୀର ରୂପ ଯୌବନକୁ ସମସ୍ତେ ଆଦର କରିବେ । ଯେଉଁମାନେ ମୋ ହାତରେ ଲକ୍ଷ ଲକ୍ଷ ଟଙ୍କା ତାଳି ଦେଇଚନ୍ତି, ସେମାନେ ବି ତମର ଏଇ ଅନ୍ତ୍ୟପ୍ରଭାକୁ ଇମିତି ଭାବରେ ବାନ୍ଧିରଖି ଚୁମ୍ବନ କରିଚନ୍ତି ।

ତୁଷାର—(ଠେଲିଦେଇ) ପ୍ରଭା ! ଏ କଥା ତମେ କହିପାରୁଚ ? ତୁମକୁ ଲଜ୍ୟା ହଉନି ?

ପ୍ରଭା—(ଗର୍ଜିଉଠି) ଲଜ୍ୟା ? କାହିଁକି ? ଏ କଥା କଣ ଆଜ ନୂଆ ଦେଖିଲ ? ନୂଆ ଶୁଣିଲ ? ଆଜିଯାଏଁ ପ୍ରଭା ଥିଲା ତମ ଆଦର୍ଶର ପତ୍ନୀ । ଆଜ ଛଳନା କରି ତାକୁ ଟିକେ ଆଦର କଲବୋଲି ସତ କଥାଟା ତୁମକୁ ଶୁଣିବାକୁ ବାଧୁଛି । ପଞ୍ଚାଏଁ ମାଡ଼ୱାରୀ, ଲମ୍ପଟ, ଧନପତିଙ୍କ ହାତ ମୁଠାରୁ

ଧନ ଟାଣି ଆଣିବା ପାଇଁ ଏଇ ରୂପ ଆଉ ଯୌବନକୁ ଯେତେବେଳେ ଝଡ଼ ବଜାରକୁ ଠେଲି ଦେଇଥିଲ ସେତେବେଳକୁ ତୁମକୁ ଲଜ୍ୟା ହେଲା ନାହିଁ ?

ତୁଷାର—ଭୁଲ ହୁଅ ପ୍ରଭା, ଭୁଲ ହୁଅ ।

ପ୍ରଭା—କାହିଁକି ? ଭୁଲ ହେବ କାହିଁକି ? ତୁମେ ସ୍ୱାମୀ, ମୁଁ ସ୍ତ୍ରୀ । ସ୍ୱାମୀର ଅଧିକାର ଜାହିର କରି ତମେ ମୋତେ ଆଦେଶ ଦେଇଥିଲ । ଆଦେଶ ମୁଁ ପାଳନ କରିଛି ଆଉ ତାର ଫଳରେ ଆସି କୋଉଠି ଠିଆ ହୋଇଛି, ସେ କଥା ମୋ ମୁହଁରୁ ଶୁଣିବାକୁ ତମେ ଆଜି ପଛେଇ ଯିବ କାହିଁକି ?

ତୁଷାର—ନା, ପ୍ରଭା, ମୁଁ ପାରୁନି । ତମର ଏ କାହାଣୀ ମୁଁ ଶୁଣି-ପାରୁନି ।

ପ୍ରଭା—ପାରୁନ ? ତେବେ ଶରଧନ ପାଇଁ ଏ କଥା ମନେ ରଖିଥାଅ ଯେ ତମର ଆଦେଶରେ ମୁଁ ଯାହା କରିଥିଲି ତା ସବୁଟି ସତ୍ୟ ହୋଇ ପାରେ କିନ୍ତୁ ସ୍ୱାମୀ-ସ୍ତ୍ରୀର ସଂସାରରେ ଏ ଧର୍ମ ସତ୍ୟ ହୁଏନା ।

ତୁଷାର—'ସ୍ୱାମୀ - ସ୍ତ୍ରୀର ସଂସାର' ! ଏ ଗର୍ବ ଆଉ ତମର ଅଛି ?

ପ୍ରଭା—ହଁ ଅଛି । ଚଣ୍ଡପ୍ରଭା ସମସ୍ତଙ୍କୁ ଧରା ଦେଇଛି ସତ, କିନ୍ତୁ କାହାରିକୁ ନିଜ ପାଖକୁ ଟାଣି ଆଣିନି । ଆଉ ସେଇ ସାହସରେ ମୁଁ ତୁମକୁ ଅନୁରୋଧ କରୁଛି ତମେ ଥରେ ତଉଲି କରି ଦେଖ, ତମର ଆଦର୍ଶ ନା ଧର୍ମପତ୍ନୀ ? ତମ ପାଖରେ କିଏ ବଡ଼ ?

ତୁଷାର—(ବଦ୍ରୂପ ହସ ହସି) ଧର୍ମପତ୍ନୀ ! ଧର୍ମପତ୍ନୀ !

ପ୍ରଭା—(ପୁଣି ଭାଙ୍ଗି ଯାଇ) ହଁ ଧର୍ମପତ୍ନୀ । ଏତେବେଳ ଯାଏଁ ମୁଁ ଭୁଲ

କହୁଥିଲ, ମୁଁ ତୁମର ଧର୍ମପତ୍ନୀ । ତୁମେ ମୋର ସ୍ୱାମୀ, ତମର ଆଦେଶ ପାଳନ କରିବା ମୋର ଧର୍ମ, ମୁଁ ଭୁଲ କହୁଥିଲି । କୁହ, ତୁମର ଆଜ କ ଆଦେଶ ଅଛି, 'କୁହ, ମୁଁ ପାଳନ କରିବି' ।

ତୁଷାର—(ରୁଦ୍ଧ ଗଳାରେ) ପ୍ରଭା !

ପ୍ରଭା—କୁହ, ମୁଁ କ'ଣ କରିବି, ମୋତେ କୁହ ?

ତୁଷାର—ତୁମେ କ'ଣ କରିବ, ତାହା ବରଂ ମୁଁ ଜାଣେ... ନା, ତମେ କରିବ ପ୍ରଭା, ମୁଁ ନୁହେଁ । ତମେ ମୋତେ କ୍ଷମା କର ପ୍ରଭା, ତମେ ମୋର ଧର୍ମପତ୍ନୀ ନୁହଁ । ସ୍ତ୍ରୀ ନୁହଁ । ସେ ସବୁର ବନ୍ଧନ ତୁଟାଇ ବହୁ ଉପରକୁ ତମେ ଚାଲିଯାଇଛ......ତମ ପାଖରେ ମୁଁ ଅତି ହୀନ, ନଗଣ୍ୟ, ତୁଚ୍ଛ । ତମେ ସ୍ତ୍ରୀ ନୁହଁ ପ୍ରଭା, ତମେ ସାଧାରଣ ନାରୀ ନୁହଁ, ତମେ ଦେବୀ, ତମେ ମୋର ନମସ୍ୟା...... ।

(ତୁଷାର ପଲଙ୍କ ଉପରେ ଯାଇ ଶୋଇଲେ, ପ୍ରଭା ସ୍ତବ୍ଧ ହୋଇ ହୋଇ ଠିଆ ହୋଇଥାଏ )

— ପ ର ଦା —

## ପଞ୍ଚମ ଦୃଶ୍ୟ

( ଦୁଷ୍ମନ୍ତର ଶୋଇଲା ଘର । ଘରଭିତରେ ଈଷତ୍ କମ୍ପିତ ନୀଳ ଆଲୋକ । ଦେଖାଗଲା ଦୁଷ୍ମନ୍ତ ନୀରବରେ ପଦଚାରଣ କରୁଛି---କିଛିକ୍ଷଣ ପରେ ଦୁଷ୍ମନ୍ତ ଥମକି ଠିଆହେଲା—ଏବଂ ଟେବୁଲ ଡ୍ରୟର ଭିତରୁ କେତେଖଣ୍ଡ ପତ୍ରିକା ବାହାର କରି ଓଲଟାଇବାକୁ ଲାଗିଲା—ଗୋଟିଏ ଜାଗାରେ ଛୁଆହୋଇ ପଢିଲା )

ଦୁଷ୍ମନ୍ତ—"ଏ କଣ ? କର୍ମବୀର ଦୁଷ୍ମନ୍ତ ? —ସେ ମଧ୍ୟ ଏଇ ସୁନ୍ଦରୀ ତରୁଣୀଙ୍କ କରକମଳରେ ସର୍ବସ୍ୱ ଅର୍ପଣ କରିଚନ୍ତି—ବିନିମୟରେ ପାଇଚନ୍ତି କଣ ?

( ପତ୍ରିକା ପଢ଼ିବା ଆଗରୁ ଦୁଷ୍ମନ୍ତର ଅଜଣାରେ ଯଶପ୍ରଭା ଆସି ସମସ୍ତ ଶୁଣିଲା । ତା ପରେ ଦେଖିଲା । ପତ୍ରିକାଟିକୁ ଦୁଷ୍ମନ୍ତ ଛଳ ଛଳ ଆଖିରେ ମୁହଁ ପାଖକୁ ନେଇ ଚୁମ୍ବନ ଦେଲା—ଆଖି ତା'ର ମୁଦ ହୋଇଆସୁଛି । ତା ପରେ ପାଗଳପରି ସେ ସବୁଯାକ ପତ୍ରିକା ଛାତିରେ ଚାପି ଧରିଛି । ଆଖି ମୁଦା—ମୁହଁ ଅସ୍ୱାଭାବିକ ଭାବେ ଉଜ୍ଜଳ ହୋଇ ଉଠୁଛି । ମୁହଁରେ ଅସ୍ପଷ୍ଟ ଉଚ୍ଚାରଣ )

"ପ୍ରଭା—ଯଶପ୍ରଭା"———

( ଘଡ଼ି ବାଇଠା ବାଜିବାର ଘଣ୍ଟାଧ୍ୱନି ଠଣ୍ ଠଣ୍ ହୋଇ ବାଜି ଉଠିଲା, ଦୁଷ୍ମନ୍ତ ଚମକିପଡ଼ିଲା—ମନରେ ଅସ୍ଥିର ଭାବ । ଚଞ୍ଚଳ ହସ୍ତରେ ଗୋଟିକଯାକ ପତ୍ରିକା ମୋଡ଼ାମୋଡ଼ି କରି ଫୋପାଡ଼ି ଦେଲା )

ଯାହାର ରକ୍ତମାଂସ ଦେହଟା ଶିଉଳିବନ ମୋଠିଁ ଦୂରରେ ବନ୍ଧୁ ଅଛି—ଯାହାର ଛବି ଖଣ୍ଡେ ସୁଦ୍ଧା ମୋ ପାଖରେ ନାହିଁ—ଅଛି କେବଳ କବିତା, କୁହୁଡ଼ିପୂର୍ଣ୍ଣ ଲେଖା, ତାହା ପାଇଁ ଏ ଦୁର୍ବଳତା— ! ନାହିଁ—ନାହିଁ ?

( ଦୁଷ୍ମନ୍ତର କଥା ଶେଷବେଳକୁ ଯଶପ୍ରଭା ସେ ଘରୁ ଅନ୍ତର୍ହିତ ହୋଇଯାଇଥିଲା । ଦୁଷ୍ମନ୍ତ କିନ୍ତୁ ଯଶପ୍ରଭାର ଉପସ୍ଥିତି ଆଦୌ ଲକ୍ଷ୍ୟ କରିନ । )

—ପରଦା—

## ଷଷ୍ଠ ଦୃଶ୍ୟ

(ଅଳିନ୍ଦ । ଯଶପ୍ରଭା ଫେରିଛି । ମନରେ ଦୁଷ୍ମନ୍ତ ଘରର ସେଇ ଦୃଶ୍ୟର ଆଲୋଚନା । )

ପ୍ରଭା—ମୋର ପାଇଁ, ? ମୋର ପାଇଁ ଏ ଅବସ୍ଥା — ମୁଁ ଏ ଘରେ ଅଛି ବୋଲି ସେ କ୍ରମଶଃ ଦୁର୍ବଳ ହୋଇ ଯାଉଛନ୍ତି— (ଅନ୍ତରାଳରେ କାହାକୁ )—କଏ ? କଏ ସେଠି ?'

( ମୀର ଆସିଲା—ତା ଆଖି ଛଳ ଛଳ )

ପ୍ରଭା—ମୀର, ଏତେ ରାତିରେ ତମେ ଏଠି କ'ଣ କରୁଥିଲ ?

ମୀର—ନୂଆ ବୋଉ ?

ପ୍ରଭା—କ'ଣ ହେଲା ମୀର ?

ମୀର—ନୂଆବୋଉ ଏତେବେଳେ ତମେ ଧ୍ରୁବଚନ୍ଦ୍ରବାବୁଙ୍କ ଘରକୁ ଯାଇଥିଲ କାହିଁକି ?

ପ୍ରଭା—( ଅସ୍ପଷ୍ଟ ସ୍ୱରରେ )—ମୀର—

ମୀର—ଏକୁଟିଆ ରାତି ଦୁଇଟାବେଳେ ତୁମେ ତାଙ୍କ ଘରକୁ ଯାଇଥିଲ କାହିଁକି ?

ପ୍ରଭା—ମୀର, ଶେଷକୁ ତମେବି ମୋତେ ଅବିଶ୍ୱାସ କଲ—

ମୀର—ମୁଁ କିଛି ଶୁଣିବି ନାହିଁ । ମୁଁ ଅଜ ବୁଝିଲି । ଦୁନିଆଁ ଲୋକେ ଠିକ୍ କହୁଥିଲେ—ଦେମାଙ୍ଗିମା ଠିକ୍ କହୁଥିଲେ—ଏକା ମୁଁ ଭୁଲ୍ କହୁଥିଲି—ଭୁଲ୍ ମୋର—ଭୁଲ୍ ମୋର !

( ଚାଲିଗଲା )

ପ୍ରଭା—ମୀର, ମୀର, ଶୁଣିଯାଅ ମୀର— । ନା—ଭଲ ହୋଇଛି— ଶେଷକୁ ତମେ ଅବିଶ୍ୱାସ କରିଛ । ଆଜ ମୋର କିଛି ବାଧା ନାହିଁ । ଏଣିକି ମୁଁ ମୁକ୍ତ । ଦେଖିବ—ତମ ମନରେ ଦୁଃଖ ଦେବାପାଇଁ—ତମକୁ କନ୍ଦେଇବା ପାଇଁ ମୁଁ ଆଜ ଏଠି ନ ଥିବି—

( ଯନ୍ତ୍ରସଙ୍ଗୀତର ଝଙ୍କାର ପ୍ରଳୟବେଗରେ ବଢିଗଲା )

—ପରଦା—

## ସପ୍ତମ ଦୃଶ୍ୟ

( ତୁଷାରଙ୍କର ଘର, ସମସ୍ତ ଘରଦ୍ୱାର ଅପରିଷ୍କାର । ମୁକ୍ତ ପଥର ମୁଖ ଘର ତୁଷାରକାନ୍ତ ଆସିଲା—ପଛେ ପଛେ ଲଜ୍ଜାବତୀ ଆଖିରେ ନୀର । ନୀର ହାତରେ ଖଣ୍ଡେ ଚିଠି )

ନୀର—କୁହ ଭାଇ, କୁହ—ନୂଆବୋଉ କୁଆଡ଼େ ଗଲେ ? ଭାଇ, ତମେ କହୁଛ କହୁନ ଚାହିଁକି ଭାଇ, କୁହ ନୂଆବୋଉ ଚାହାନ୍ତି ?

ତୁଷାର—ଚିଠିରେ ସେ କ'ଣ ଲେଖିଛି ନୀର ?

ନୀର—ଲେଖିଛନ୍ତି—ନୀର, ତମେ ସନ୍ଦେହ କଲ ! —ଭାବିଥିଲି ତୁମକୁ ସବୁକଥା ଖୋଲି କହିବି—ପାରିଲି ନାହିଁ—ତମେ ମୋର ସ୍ନେହର ପିତୁଳା—ଆଦରର ଧନ—ତମ ପାଖରେ କୈଫିୟତ ଦେବାକୁ ମୋ ତୁଣ୍ଡ ଫିଟନ୍ତା କଅଣ ?" ( ଚିଠି ପଢ଼ା ବନ୍ଦକରି )—ସେଇଠୁ ତମ କଥା ଲେଖିଛନ୍ତି ।

ତୁଷାର—ହଁ, ମୁଁ ତାକୁ ସହୀର ଆସନରୁ ଠେଲିଦେଇ—ଦେଇଛି ବନ୍ଧୁର ଆସନକୁ । ମୋ ଅସ୍ଥା ପାଖରୁ ଦୂରରେ ଯାଇ ସେ ଆଜ ଏଠି ରହନ୍ତା କାହିଁକି ?

ନୀର—ନୂଆବୋଉ କ'ଣ ଆଉ ଫେରିବେ ନାହିଁ ?

ତୁଷାର—ଲେଖିଛି ସତ୍ୟ......ଫେରିବ ସେଦିନ, ଯୋଉ ଦିନ ମୁଁ ମୋ ବନ୍ଧୁର ଅଭ୍ରାରୁ ମୁକ୍ତ ହେଇ, ଏ ବଡ଼ ବୋଠାରୁ ଓହ୍ଲାଇ ସତ୍ୟ ଧାରରେ ଯାଇ ଠିଆ ହେବ ।

ନୀର—ହଁ, ସେଇଆ ତ ଲେଖିଛନ୍ତି ।

ତୁଷାର—ବନ୍ଧୁର ଆଶ୍ରୟ......ମୋର ବନ୍ଧୁ......କିନ୍ତୁ କାହିଁ ସେ —ସେ ଅଜ କାହିଁ ?

( ଅଧୀରଭାବେ ହେମାଙ୍ଗିନୀ ଆସିଲା )

ହେମ—ତୁଷାର ବାବୁ !

ତୁଷାର—କିଛି ଖବର ପାଇଲେ ?

ହେମ—ନା—ପାଇଲି ଏଇ ଚିଠି ଖଣ୍ଡିକ ।

ତୁଷାର—ଚିଠି ! ଆପଣଙ୍କ ପାଖକୁ ତା'ହେଲେ ଖଣ୍ଡେ ଚିଠି ଲେଖି ଦୁହେଁ ଘର ଛାଡ଼ି ଚାଲି ଯାଇଛି—

ହେମ—ଏଥିରୁ ଆପଣ କଣ ବୁଝୁଚନ୍ତି କୁହନ୍ତୁ ତୁଷାର ବାବୁ । ଭାଇ ନାହାନ୍ତି—ପ୍ରଭା ନାହିଁ—ଦୁହେଁ ଏକାବେଳେକେ ଘର ଛାଡ଼ି ଚାଲିଗଲେ—ଏ ଦୁର୍ଘଟଣାର କି ଉତ୍ତର କିଏ ଦବ ?

ମୀର—ତମେ ମତେ କୁହ ଭାଇ—ନୂଆବୋଉଙ୍କୁ ତମେ ଫେରାଇ ଆଣିବ କି ନାହିଁ—କୁହ ଚୁପ କାହିଁକି !

ହେମ—ଭାଇ ଆପଣଙ୍କୁ ନ ପଚାରି କେବେ କିଛି କରନ୍ତି ନାହିଁ—ଆଜି ସେ ଆପଣଙ୍କ ଅଜାଣତରେ ଏ କାମ କଲେ କେମିତି ? ଗୋଟାଏ ବଂଶର ସବୁ ଆଶା ଭରସା ବୁଡ଼ାଇ ଦେଇ ସେ ଦେଶାନ୍ତରୀ ହେଲେ । କୁହନ୍ତୁ ତୁଷାର ବାବୁ ଭାଇ କଣ ଆଉ ଫେରିବେ ନାହିଁ ?

ମୀର—ଘରେ ରୁକର ଠାକୁରାଣୀ, ଏ କଥା ଶୁଣି ଦେଖେଇ ଶୁଣେଇ ବାର କାନ୍ଦା କରୁଚନ୍ତି ।

ହେମ—ଆଉ ଟିକିଏ ପରେ ବାହାରେ ଗୁହାରି ଆଜି ଏ କାନ୍ଦ ଅପବାଦର ନାଆଁ ଧୂ ଧୂ ହୋଇ ଜଳି ଉଠିବ । ସେତେବେଳେ ? ସେତେବେଳେ କୁହନ୍ତୁ ତୁଷାରବାବୁ—

(ଆଉ କିଛି କହି ପାରିଲେ ନାହିଁ । ତୁଷାର ସ୍ତବ୍ଧ ହୋଇ ଚିଆ ହୋଇଥାଏ ।)

ମାଳ—ଭାଇ, ଭାଇ—

ହେମ—ତୁଷାର ବାବୁ—

ତୁଷାର—ଦୁଷ୍ମନ୍ତ ନାହିଁ, ଯଶୋଦ୍ଭ ନାହିଁ । ଅଭାବ ଅନାଟନ ଦୁଃଖ ଶୋକର ଝଞ୍ଜାରୁ ଏ ଦୁନିଆଁକୁ ମୁକ୍ତ କରିବା ଲାଗି ଧନେ ଯିଏ ଆଗେଇ ଆସିଥିଲେ, ଆଜି ସେ ନିଜେ ଝଞ୍ଜାର ବେଗ ସମ୍ଭାଳି ପାରି ନାହାନ୍ତି । ମୁଁ ଜାଣେ ହେମାଙ୍ଗିନୀ ଦେବୀ, ପିତୃ ପୁରୁଷଙ୍କ ସଞ୍ଚିତ ଧନ ଦାନ କରି ଦେଶ ଓ ଦଶର ସେବା କରି ହୁଏ ନାହିଁ ବୋଲି ଦୁଷ୍ମନ୍ତ ଆଜି ଘରୁ ଧାଇଁ ଦୀନ ଦୁଃଖୀଙ୍କ ପାଖକୁ ଓହ୍ଲାଇ ଯାଉଛନ୍ତି । ଆଉ, ସ୍ୱଦେଶର ଛାତ୍ର ପରଦେଶ ଭିତରେ ସ୍ୱାମୀଙ୍କ ଆଦର୍ଶକୁ ବରଦାସ୍ତ କରି ନ ପାରି ପୁଣି ତା'ର ଜନ୍ମସ୍ଥାନକୁ ଫେରି ଯାଇଛି । ଦୁନିଆଁ ଆଜି ଘରଛଡ଼ା—ସେଇଥିପାଇଁ ଆପଣ ସେମାନଙ୍କ କଥା ନ ଭାବି ଶାନ୍ତିଚନ୍ଦ୍ର ଦୁନିଆର ନିନ୍ଦା, ଅପବାଦର କଥା କହୁ ହେମାଙ୍ଗିନୀ ଦେବୀ, ମତେ ଛୁଟି ଦେଉନ୍ତୁ, ମୁଁ ଦୁଷ୍ମନ୍ତ ପରି ଠକି ନୁହେଁକି ଯଶୋଦ୍ଭ ପରି ଗୁଣୀ ନୁହେଁ । ମୋ ଜୀବନରେ ଏ ଝଞ୍ଜା ଶିହରଣ ତୋଳୁଥିଲା—ତୁଏନ୍ତ ଶିହରଣ ତୋଳୁଛି । ମୋ ନିକଟରେ ସହରର ବଡ଼ ବଡ଼ କୋଠା କି ଅଟ୍ଟାଳିକାର ଆକର୍ଷଣ ଭିତରେ କିଛି ହେଲେ ତଫାତ୍ ନାହିଁ । ମୁଁ ଅନ୍ଧ, ଅଙ୍ଗ, ନିଃସହାୟ । ମୁଁ କେବେ ଏ ଗୌରବ ବହିବ କାହିଁକି ? ମୁଁ ଖାଲି